# ଆମ ଗୀତ ବହି



ଭାରତ ଜ୍ଞାନ ବିଜ୍ଞାନ ସମିତି-ଓଡ଼ିଶା

# ଆମ ଗୀତ ବହି

ସଂକଳକ: ଜୟଦ୍ରଥ ଚୌଧୁରୀ

---

ଭାରତ ଜ୍ଞାନ ବିଜ୍ଞାନ ସମିତି - ଓଡ଼ିଶା
ସି-୨, ବରମୁଣ୍ଡା ହାଉସିଂବୋର୍ଡ଼ କଲୋନୀ, ଭୁବନେଶ୍ୱର

# ଆମ ଗୀତ ବହି


ସଂକଳକ ଜୟଦ୍ରଥ ଚୌଧୁରୀ

ପ୍ରକାଶକ ଭାରତ ଜ୍ଞାନ ବିଜ୍ଞାନ ସମିତି - ଓଡ଼ିଶା
ସି-୨, ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧ ୦୦୩
ଟେଲିଫୋନ୍/ଫାକ୍ସ- ୦୬୭୪ - ୫୫୦୮୯୧

ପ୍ରକାଶ କାଳ : ରଥଯାତ୍ରା - ୨୦୦୦

ମୁଦ୍ରଣ

ମୂଲ୍ୟ ଦଶ ଟଙ୍କା


# AMA GITA BAHI


Compiled by : Jayadratha Choudhury

Publishers Bharat Gyan Vigyan Samiti - Orissa
C-2, Baramunda Housing Board Colony
Bhubaneswar - 751 003
Tele / Fax : 0674 - 550891

Publication Period Rath Yatra - 2000

Printed at

Price Ten Rupees



ଗୀତ ଶୁଣିବାକୁ ସମସ୍ତଙ୍କୁ
ଭଲ ଲାଗେ । ଗୀତ
ଗାଇବାକୁ ମଧ୍ୟ ଭଲ ଲାଗେ ।
ଏହି ସରଳ ନିୟମକୁ ନେଇ
ଆମର ଏ ଛୋଟ ପୁସ୍ତିକା ।
ଏଥିରେ ଅନେକ ପ୍ରକାର ଓ
ଅନେକ ଭାବର ଗୀତକୁ
ଏକାଠି କରାଯାଇଛି । ଏହାରି
ମାଧ୍ୟମରେ ପରସ୍ପର ମଧ୍ୟରେ
ଉନ୍ମୁକ୍ତ କରିବାର ବାଟଟିଏ
ମିଳିଯିବ । ଏହା ଆମ
ଜୀବନର ଅନ୍ୟ ଏକ
ପରିପ୍ରକାଶ ନୁହେଁ କି ?



# ସୂଚୀ ପତ୍ର

| ବିଷୟ | ପୃଷ୍ଠା |
|---|---|

# ୧ - କିଏ ସେ କଲା

କିଏ ସେ କଲା, କେମିତି କଲା, କାହିଁକି ଅବା କଲା ?
ଏତେ ବଡ଼ ଏ ଆକାଶ ଦେହେ, କେତେ ଯେ ରଙ୍ଗ ଦେଲା ।

ସକାଳ ହୁଏ ସଞ୍ଜ ହୁଏ, ଉଏଁ ସୂରୁଜ ବୁଡ଼େ,
ଜହ୍ନମାମୁଁକୁ କୋଳରେ ଧରି ତାରା ମଶାଲ ଜାଳେ ।

ସାଗର କୂଳେ ଲହରି ମାଳା, ହୁଏନା ଟିକେ ଥୟ,
କାହାକୁ ଅବା ଖୋଜୁଛି ସିଏ, ମନେ ତା' ଏକ ଲୟ ।

ନାନା ଜାତିର ଗଛ ପତରେ, କେତେ ରଙ୍ଗର ଫୁଲ,
ରଙ୍ଗ ବେରଙ୍ଗ ପରଜାପତି, କିଏ ତା କାରିଗର ?

ପାଣି ଭିତରେ ମାଛଟି ଖେଳେ, ଆକାଶେ ଉଡ଼େ ପକ୍ଷୀ,
କେଡ଼େ ଯତନେ ମହୁଫେଣାଟି, କରିଛି ମହୁମାଛି ।

ସାପର ଖେଳ ମୟୂର ନାଚ, ଭୋକିଲା ବାଘ ଆଖି,
ଅବାକ ହୁଏ ଦେଖି ମୁଁ ସବୁ ଧନ୍ୟ ସେହି ଶିଳ୍ପୀ ।

କିଏ ସେ ଦେଲା ଭାବନା ଏତେ, ଏତେ ଯେ ଶିହରଣ,
ଆଖିରେ ଲୁହ ଓଠରେ ହସ, ଦୁଃଖ ଅଭିମାନ ।

ଯିଏ ବି ହେଉ ଯାହା ବି କରୁ, ଯେଉଁଠି ଲୁଚିଥାଉ,
ଖୋଜିବି ତାକୁ ଜୀବନ ସାରା, ଯାହା ବି ହେଲେ ହେଉ ।



• ଜୟନ୍ତୀ ତ୍ରିପାଠୀ

# ୨ - ସପନର ସାହା

ମନର ସପନ ମୋର ଡାକରା ଦିଏ,
ଆକାର ପାଇବା ଲାଗି ଚଞ୍ଚଳ ହୁଏ ।
ନିକଟରେ ଜଣେ ହିଁ ତା ଜବାବ ଦିଏ,
ଆଉ ନୁହେଁ କେହି ପ୍ରିୟ ବିଜ୍ଞାନ ସିଏ ।
*ମତେ ବିଜ୍ଞାନ ବଢ଼ିଆ ଲାଗେ ।*
*ତା'ର ପରଶେ ସପନ ଜାଗେ । (୨ଥର)*

ପକ୍ଷୀ ପରି ଡେଣା ଝାଡ଼ି ଆକାଶେ ଉଡ଼ିବି,
ମାଛ ପରି ଡେଣା ମେଲି ଜଳରେ ବୁଡ଼ିବି ।
ଚିତା ପରି ଗୋଡ଼ ଠେଲି ପବନେ ଛୁଟିବି,
ସିଂହ ପରି ତାକତରେ ପାହାଡ଼ ଟେକିବି ।
ମହାବଳୀ ହେବି ମୁହିଁ ବିଜ୍ଞାନ ଧାରାରେ,
ସରଜିବି ନୂଆ ଧାରା ଧରଣୀ ବୁକୁରେ ।
*ମତେ ବିଜ୍ଞାନ ବଢ଼ିଆ ଲାଗେ ।*
*ତା'ର ପରଶେ ସପନ ଜାଗେ । (୨ ଥର)*

ଅଜଣା ଦୁନିଆ ସାରା ରକେଟେ ଘୂରିବି,
ଅଦେଖା ଜଗତକୁ ମୁଁ ନିରେଖି ଦେଖିବି ।
ପରବତ ଭେଦି ମୁହିଁ ସୁଡ଼ଙ୍ଗ ଖୋଳିବି,
ଜଳଧାରା ଅଟକାଇ ଜୀବନ ସଞ୍ଚିବି ।
ଗଢ଼ିଯିବି ନୂଆ ଯୁଗ ସବୁ ଜୀବ ଲାଗି,
ବିଜ୍ଞାନର ଚାରାଟିକୁ ଯତନେ ରୋପିବି ।
*ମତେ ବିଜ୍ଞାନ ବଢ଼ିଆ ଲାଗେ ।*
*ତା'ର ପରଶେ ସପନ ଜାଗେ । (୨ଥର)*

• ବିନୟ କୃଷ୍ଣ ପଟ୍ଟନାୟକ

# ୩ - ଟିକି ବିଜ୍ଞାନୀ

ଆମେ ଟିକି ଟିକି ବିଜ୍ଞାନୀ ଆମେ ଟିକି ଟିକି ବିଜ୍ଞାନୀ
ସୁନ୍ଦର ଆମ ଧରଣୀ ପବିତ୍ର ଆମ ଜନନୀ
ମୁଣ୍ଡକୁ ଖଟାଇ ହାତକୁ ଲଗାଇ
ଗଢ଼ିବା ଭାରତ ସଭିଏଁ ମିଳି । (୦)
କାଲି ଗଢ଼ିଥିଲୁ ନଈର ବାଲିରେ
କେତେ କେତେ କୋଣାରକ,
ଡିମିରି ଫଳରେ କାଠିକୁ ପୂରାଇ
ଗଢ଼ିଥିଲୁ ଗାଡ଼ି ଚକ ।
ଆମେ କଲା ଗୁଡ଼ି ଆକାଶେ ଉଡ଼ିଛି
ନଟେଇ ସୂତାକୁ ଭିଡ଼ି,
ମାଛ ସାପ ପୋକ କେତେ ଯେ ଧରିଛୁ
ନଈ ପୋଖରୀରେ ବୁଡ଼ି । (୧)
ଆମରି ଆଗରେ କେତେ ଯେ ବିଜ୍ଞାନୀ
ଚାଷୀ ବଢ଼େଇ କମାର,
କୁମ୍ଭାର ଗୁଡ଼ିଆ ତନ୍ତୀ ମୋଚି ଧୋବା
ଶିଳ୍ପୀ ଆଉ କାରିଗର ।
ନିଜ ଚାରିପାଖ ଜିନିଷକୁ ନେଇ
ଗଢ଼େ କେତେ ନୂଆ ନୂଆ,
ଏ ସମାଜ ଜିଏଁ ତାଙ୍କ କାମ ପାଇଁ
ସିଏ ହିଁ ଆମରି ସାହା । (୨)
ବିଜ୍ଞାନୀ ଆମେରେ ତାଙ୍କରି ଚେଲା,
ଆମେରେ ଶିଳ୍ପୀ ଆମ ମନ ତ ଖୋଲା ।
ଆଗେଇ ନେବାରେ ଆସ ଆମରି କିର୍ତ୍ତୀ
ହସି ଖେଳି ନାଚି ଗାଇ ଯିବାରେ ମାତି ।

● ବିନୟ କୃଷ୍ଣ ପଟ୍ଟନାୟକ

# ୪- ଚିକ୍‌ମିକ୍ ତାରା

ସଞ୍ଜ ବୁଡ଼ିଲା ରାତି ଅଇଲା, ଅନ୍ଧାର ଗଲା ମାଡ଼ି,
କଳା ପରଦା ଝଲସି ଗଲା, କେତେ ଯେ ରୂପ ଧରି ।
ଚିକ୍‌ମିକ୍ ଚିକ୍‌ମିକ୍ ତାରା,
ଝିଲ୍‌ମିଲ୍ ଝିଲ୍‌ମିଲ୍ ତାରା,
ନାଲିନେଳି ହଳଦିଆ ତାରା,
ସାନବଡ଼ ବଡ଼ସାନ ତାରା ।
ରାତିର ଆକାଶ କେତେ ବିବିଧେ ଭରା..... (୦)

ତାରାକୁ ତାରା ନିକଟ ତାରା ଯୋଡ଼ି ଯୋଡ଼ିକା ଦେଖ,
ଆକାଶ ସାରା ଛାଇ ଯାଇଛି କେତେ ମଉଜ ରୂପ ।
ମେଲି ଦେଇଛି ଆକାଶ ତା'ର ଅସରା ଗପ ବହି,
କେତେ ଯେ ଜୀବ କେତେ ଦରବ ଚାଲିଛି କଥା କହି ।
ଚିକ୍ ମିକ୍ ଚିକ୍‌ମିକ୍ ତାରା.....

● ବିନୟକୃଷ୍ଣ ପଟ୍ଟନାୟକ



# ୫- ବଢ଼ିଆ ଲାଗେ ଅଙ୍କର ଖେଳ

ବଢ଼ିଆ ଲାଗେ ଅଙ୍କର ଖେଳ,
(ଦେଖ) ୦,୧,୨,୩,.....୯ ର କି ସୁନ୍ଦର ମେଳ,
ମିଶାଣ ଫେଡ଼ାଣ କର, ଗୁଣନ ହରଣ କର,
ହରଣ ଗୁଣନ କର, ଫେଡ଼ାଣ ମିଶାଣ କର,
ମିଶା ଫେଡ଼ା ଗୁଣା ହରା, ଗୁଣା ହରା ମିଶା ଫେଡ଼ା
କରିବା ଚାଲ ।
*ବଢ଼ିଆ ଲାଗେ ଅଙ୍କର ଖେଳ..... (୦)*
ହିମାଳୟ ପାହାଡ଼କୁ ମାପି ଥୋଇଲା (କିଏ....)
ଯିଏ ଅଙ୍କ ଜାଣିଲା,
ସାତ ତାଳ ସାଗରର ଖାଲ ମାପିଲା (କିଏ....)
ଯିଏ ଅଙ୍କ ଜାଣିଲା,
ଦେଶସାରା ଲୋକଯାକ କିଏ ଗଣିଲା (କିଏ...)
ଯିଏ ଅଙ୍କ ଜାଣିଲା
ନ ଦିଶିଲା ତାରାର ଦୂରତା ମାପିଲା (କିଏ....)
ଯିଏ ଅଙ୍କ ଜାଣିଲା
ମିଶାଣ ଫେଡ଼ା ଗୁଣା ହରା, ଗୁଣା ହରା ମିଶା ଫେଡ଼ା କଲା କିମିଆ ।
*ବଢ଼ିଆ ଲାଗେ ଅଙ୍କର ଖେଳ.... (୧)*
ଅଙ୍କ ମଜା ଚାଖିଛି ଯେ ଭାରି ସିଆଣି,
ଅଳପ ଖଟିକି ବେଶୀ ଯାଏ ସେ ଜାଣି ।
ଯେତେ ଅଛି ଅଙ୍କ ସବୁ ଆମରି ସାଥି,
ତା' ସାଥିରେ ଖେଳି ଖେଳି ଯିବାରେ ମାତି ।
ମିଶା ଫେଡ଼ା ଗୁଣା ହରା, ଗୁଣା ହରା ମିଶା ଫେଡ଼ା
ଖେଳିବା ଚାଲ ।
*ବଢ଼ିଆ ଲାଗିଲା ଅଙ୍କର ଖେଳ...... (୨)*

● ବିନୟକୃଷ୍ଣ ପଟ୍ଟନାୟକ

# ୬- କାହିଁକି ?

କାହିଁକି, କାହିଁକି, କାହିଁକ ରେ (୨ ଥର)
ଆକାଶରେ ତାରା ଚିକ୍‌ମିକ୍ କରେ,
ଇନ୍ଦ୍ରଧନୁ ସାତ ରଙ୍ଗ ଧରେ ।
ମନ୍ଦାର, ରଙ୍ଗିଣୀ ଦିଶେ ନାଲି,
ବୁଢ଼ିଆଣୀ ଜାଲ ଝିଲିମିଲି ।
*ଏମିତି କାହିଁକି ହେଉଛି ରେ..... (୦)*

ଆମ୍ବ, ନିମ୍ବ, ଲେମ୍ବୁ ଅଲଗା ଲାଗେ,
କେଡ଼େ କେଡ଼େ ଢେଉ ସାଗରେ ଉଠେ ।
କୁଆ, ଶୁଆ ଉଡ଼େ ଡେଣା ମେଲାଇ,
ବିଲେଇ ପିଠିରେ ଡେଣା ତ ନାହିଁ ।
*ଏମିତି କାହିଁକି ହେଉଛି ରେ.... (୧)*

ଜୁଳୁଜୁଳିଆ ତ ଜାଳେ ମଶାଲ,
ମେଣ୍ଢା, କଇଁଚର ପିଠିଟା ଢାଲ ।
ପାହାଡ଼ ମୁଣ୍ଡିଆ ନିଶୂନ ଲାଗେ,
ହସିଲା ଆଖିରୁ ଲୁହ ନିଗିଡ଼େ ।
*ଏମିତି କାହିଁକି ହେଉଛି ରେ ...... (୨)*

ଆମ ସାଥି କିଆଁ ଭୋକରେ ଶୁଏ,
ଭିକ ମାଗି ମାଗି ବିକଳେ ଜିଏଁ ।
କେତେ ଦିନ ସାଥି ଚୁପ୍ ରହିବା,
ଚାଲ ଏ ସବୁକୁ ପ୍ରଶ୍ନ କରିବା ।
*ଏମିତି କାହିଁକି ହେଉଛି ରେ ...... (୩)*

*(୧୯୮୭ର ଜନ ବିଜ୍ଞାନ ଯାତ୍ରାର ଏକ ଲୋକପ୍ରିୟ ଗୀତ)*

# ୭ - ଆମ ପାଠଶାଳା

ଆମ ପାଠଶାଳା, ନିଜ ହାତେ ଗଢ଼ା,
ବିଶେ ଶୋଭାବନରେ ।
*ଆମ ପାଠଶାଳା ...... (୦)*

କୁଞ୍ଜେ କୁଞ୍ଜେ ମଧୁମାଳତୀ ହସେ,
କାନନ ଭରେ ମଲ୍ଲୀ ସଜଳ ବାସେ,
ପାହାନ୍ତି ସମୀରେ ତା'ର ପାଖୁଡ଼ା ଖସେ,
ପରମ ସୁହାଗେ ମରମ ଆବେଗେ,
ସୁଖେ କାଟୁ ଦିନରେ ।
*ଆମ ପାଠଶାଳା ...... (୧)*

ଶାଳବଣେ ଡାକିଯାଏ ବିହଗ ବଧୁ,
ମହୁମାଛି ଉଡ଼ି ପିଏ ବିମଳ ମଧୁ,
ଆମେ ସବୁ ଜାଗିଉଠୁ ଗଭୀର ନିଦ୍ରୁ,
ଲାଗୁ ନିଜ କରମେ, ଦେଶ ସେବା ଧରମେ,
ଢାଳି ମନ ପ୍ରାଣରେ ।
*ଆମ ପାଠଶାଳା ...... (୨)*

ନାରିକେଳ ପତ୍ରପୁଞ୍ଜେ ନୁଆନ୍ତି ମଥା,
ମନ୍ଦାର କଳିଟି ଖୋଲେ ନୟନ ପତା,
କାନେ କାନେ କହେ କେଉଁ ଗୋପନ କଥା,
ଥିରି ବାଆ ପରଶେ ପ୍ରାଣେ ଆଣେ ହରଷ,
ଘୁଞ୍ଚେ ଦୁଃଖ ଦୈନ୍ୟରେ ।
*ଆମ ପାଠଶାଳା ...... (୩)*

(ବାଜି ରାଉତ ଛାତ୍ରାବାସର ଗୀତ)

# ୮ - ଏମିତି ସ୍କୁଲ୍‌ରେ ମୁଁ ପାଠ ପଢ଼ନ୍ତି

ଏମିତି ସ୍କୁଲ୍‌ରେ ମୁଁ ପାଠ ପଢ଼ନ୍ତି,
ହସି ଖେଳି ନାଚି ଗାଇ କେତେ ଶିଖନ୍ତି,
ଅପା ଗୀତ ଶିଖାନ୍ତେ, ଭାଇ ଗପ କହନ୍ତେ,
ଅପା ନାଚ ଶିଖାନ୍ତେ, ଭାଇ ସାଥେ ବୁଲନ୍ତେ ।
*ନାଚି ଧିନ୍ ଧିନାଧିନ୍ ହସି ଖିଲି ଖିଲି,*
*ଗାଇ ମିଳିମିଶି ବୁଲି ଝୁଲିଝୁଲି । ....... (୦)*

କି ସୁନ୍ଦର ଦିଶେ ଆମ ଟିକି ବଗିଚା,
ଭଳିଭଳି ଫୁଲ ଫଳେ ଲାଗେ ତ ମଜା ।
ପୋଖରୀ କୂଳରେ ଗାଏ ଟିକି ଚଢ଼େଇ,
ତା' ମଧୁର ଗୀତ ମନ ଦିଏ ଭୁଲେଇ ।
ପ୍ରଜାପତି ପଛେ ଧାଇଁ ଖେଳି ଖେଳିକା,
ସଫା କରି ପାଣି ଦେଇ ଗଢୁ ବଗିଚା ।
*ଗଛ ପତର କୋଳେ, ଫୁଲ ପାଖୁଡ଼ା ମେଳେ,*
*କେତେ ଭଳି ଭଳିକା ଫଳ ଡାଳରେ ଝୁଲେ । ..... (୧)*

ବରଷକେ ଥରେ କରୁ ବଣରେ ଭୋଜି,
ବଣ ପାହାଡ଼ର କୋଳେ ଯାଉରେ ମଜି ।
କାଠ ପାଣି ଆଣି ଆମେ ଚାଳୁରେ ଚୁଲି,
ନଈର କୂଳରେ ରାନ୍ଧୁ ଗୀତ ଯେ ବୋଲି
ଆମରି ଖୁସିରେ ସାରା ବଣଟା ହସେ,
ପାହାଡ଼ ବି କଥା କହେ ଆମରି ସାଥେ ।
*ଲୁଚି ପଥର କୋଳେ ଚଢ଼ି ଗଛର ଡାଳେ,*
*ତୋଳି କେତେ ଯେ କୋଳି ଖେଳୁ ନଈର କୂଳେ । ...... (୨)*

ଆମର ଏ ପାଠାଗାର ବହିରେ ଭରା,
ଗପ ଗୀତ  ଚିତ୍ରେ ଲେଖା ଦୁନିଆଁ ସାରା ।
ଏଇ ଘରେ ନାଚ ଶିଖୁ, ଗୀତ ବି ଶିଖୁ,
ବାଜା ତାଳେ ମିଶାଉ ଯେ କେତେ ସୁରକୁ ।
ଘାସର ଚଦରେ ଢଙ୍କା ଆମ ପଡ଼ିଆ,
ତେଇଁ କୁଦି ନାଚି ଖେଳି ଲାଗେ ବଢ଼ିଆ ।
ମନ ହାଲୁକା ହୁଏ ଦେହ ବଳତ ପାଏ
*କେତେ ନୂଆ ଭାବନା ସବୁ ମନରେ ଖେଳେ ।.... (୩)*

ଅପା ଭାଇ ସାଥେ ମିଳି କାମ କରିବୁ,
ମାଡ଼ ଗାଳି ଡର ଛାଡ଼ି ହାତ ମିଳାଇ,
ନୂଆ ଏକ ପାଠଶାଳା ଆମେ ଗଢ଼ିବୁ ।
ନିଜ ହାତେ ଗଢ଼ା ପାଠଶାଳା ଆମର,
ଭୁଲିବୁନି, କେବେ ତାକୁ ସାରା ଜୀବନ,
*ଘୋଷା ଚଳିବ ନାହିଁ, ମାଡ଼ ରହିବ ନାହିଁ,*
*ନିଜ ହାତରେ କରି ଶିଖି ଚାଲିବୁ ଯହିଁ ।.... (୪)*

*• ବିନୟ କୃଷ୍ଣ ପଟ୍ଟନାୟକ*



# ୯- ଆମର ଚାହିଁ

ଆମେ ଭାରତର ପିଲାମାନେ ମିଶି ଆଜି ତୁମକୁ ମାଗୁଛୁ
ଏପରି ଶିକ୍ଷା, ଯେଉଁଠିଥିବ, ଟିକେ ସିନିହ ଆନନ୍ଦ ।
କୁନି କୁନି ଗୀତ ଥିବ, ଖୁସିରେ ମନ ଉଲ୍ଲସିବ ।
ଖେଳ ହେବ... ଖେଳଣା ଥିବ,
ମଜା ତ ହେବ..... ହସ ଫୁଟିବ ।
ରଙ୍ଗ ବେରଙ୍ଗ ନାଚ, କୁଦ ।
ଆମେ ଭାରତର ପିଲାମାନେ ମିଶି ।...... (୦)
ଆମ ପରି କେତେ କୋଟି ଛୁଆ,
ଶିକ୍ଷା ଯାହାଠୁ ଦୂରରେ ଠିଆ ।
କେବେ ସେମାନେ ପଢ଼ିବେ (୨ଥର)
ଆମେ ଭାରତର ପିଲାମାନେ ମିଶି ସଭିଏଁ ମିଶି ଚାହୁଁଛୁ,
ଶିକ୍ଷାମାନେ ସଂଭିଙ୍କ ଶିକ୍ଷା ଶିକ୍ଷାରେ ଥିବ ଅସଲ ମଜା
ଆମେ ଭାରତର ପିଲାମାନେ ମିଶି ...... (୧)
ଭାରି ବସ୍ତାନୀ ବୋହି ବୋହିକା, ଖେଳକୁଦ ଆମେ ଭୁଲି ଗଲୁଣି ।
ହସ, ଗୀତ ତ ମନେ ପଡୁନି ପାଠରେ କିଛି ମଜା ତ ନାହିଁ ।
ହାତରେ ତୁମେ ଧରିଛ ଛାଟ, ଆଖିରେ ତୁମେ ଭରିଛ ରାଗ ।
ଏମିତି ପଢ଼ିବା ଭା'ରି କଷ୍ଟ କିଛି ବି କରିବା ଭା'ରି କଷ୍ଟ ।
ହରିଣ ପରିକା ଡରିଡରିକା ଶୁଆ ପରିକା ଘୋଷି ଘୋଷିକା ।
ହରାଜିତା ଲାଗି ଖେଳ ଖେଳିକା,
ପିଲାଦିନ ସରି ଯାଉଛି ।
ଜ୍ଞାନର ସ୍ୱପ୍ନ ଶୋଇ ପଡୁଛି ।
ଆମେ ଭାରତର ପିଲାମାନେ ମିଶି..... (୨)

*ମୂଳହିନ୍ଦୀ : କେ.କେ. କୃଷ୍ଣକୁମାର*

# ୧୦- ଶିକ୍ଷକ... ବହି

ଯାହାବି ଦେଖିଲେ ମୋ ମନ ପଚାରେ
ଏଇଟା କ'ଣ ଏ କେଉଁଠୁ ଆସିଲା ?
କିଏ ବନେଇଲା ଏ କେମିତି ହେଲା ?
ସଭିଙ୍କୁ ପଚାରେ. ନିଜେ ବି ବିଚାରେ
ଉତ୍ତର ମିଳେନା ସବୁ କଥାର
*କେହି ବି ଜାଣେନା ସବୁ ଉତ୍ତର..... (୧)*

(କେବେ) ଅପା କହିଲା, ବାପାଙ୍କୁ ପଚାର ।
ଭାଇ କହିଲା, ମାଆଙ୍କୁ ପଚାର ।
ମାଆ କହିଲା, ଗୁରୁଙ୍କୁ ପଚାର ।
ଦାଦା କହିଲେ, ଆଈଙ୍କୁ ପଚାର ।
ପଚାରି ପଚାରି ଥକିଗଲି ମୁହିଁ
ସୁଖ ଲାଗିଲାନି କାହା ବିଚାର
*ସଭିଏଁ କହିଲେ ବହିକୁ ପଚାର..... (୨)*

ପାଠାଗାର ଗଲି ବହି ଦରାଣ୍ଡିଲି
ଯା' ଖୁସି ପାଇଲି ପଚାର ନାହିଁ,
ସେହି ଆନନ୍ଦର ତୁଳନା କାହିଁ ?
ମୋ' ମନ ପରି କୋଟିଏ ପ୍ରଶ୍ନର
ବହି ଦେହେ ଥିଲା ସବୁ ଉତ୍ତର,
*ବହିର ଦୁନିଆ କେତେ ଯେ ବଡ଼..... (୩)*

ଦେଖ ସାଥି ଦେଖ ବହି ମେଲାଇ,
ମନକୁ ତୁମର ସେ ଦେବରେ ମୋହି ।
ପାଉ ନାହଁ ଯଦି ମନର ବହି,
ଲେଖି ଲେଖାଅ ତୁମ ରଚିତ ବହି ।
କାଲିଠୁ ଆଜିକି ଆଜିଠୁ କାଲିକି
ବହି ଗଢ଼ି ଦେବ ଶାନ୍ତିର ସେତୁ ।
*ବାଟ ଦେଖାଇବ ଯୁଗ ଯୁଗକୁ । (୪)*

# ୧୧- ଏଇ ଦେଶ ଏଇ ମାଟି

ଏଇ ଦେଶ ଏଇ ମାଟି ମମତାମୟୀ ମାଆଟି,
ସେବାରେ ତାର ଜୀବନ ଦେବା ରଖିବା ତାର ନାଆଁଟି ।
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଆମ ଏଇ ଜନ୍ମ ମା'ଟି
ଏଇ ଦେଶ......... (୦)

ଯହିଁ ଝରଣା ଝରି ଯାଏ, ଯହିଁ କୋଇଲି କୁହୁ ଗାଏ ।
ସୁନାର ଫସଲ ଲହରୀ ଖେଳେ ବୁକୁରେ ଯାଏ, ଲୋଟି ।
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଆମ ଏଇ ଜନ୍ମ ମା'ଟି
ଏଇ ଦେଶ......... (୧)

ଚିର ମଳୟ ଯା'ର ପବନ ଚିର ସବୁଜ ଯା'ର କାନନ
ସାଗର ଯାହାର ରତ୍ନ ଭଣ୍ଡାର କୋଟି ରତ୍ନ ଦିଏ ଭେଟି ।
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଆମ ଏଇ ଜନ୍ମ ମା'ଟି
ଏଇ ଦେଶ......... (୨)

• ଲକ୍ଷ୍ମୀକାନ୍ତ ମହାପାତ୍ର



# ୧୨- ସୁନ୍ଦର ମୋ ଜନମ ଭୂଇଁ

ସୁନ୍ଦର ମୋ ଜନମ ଭୂଇଁ,
ସୁନ୍ଦର ତା' ଶାଗୁଆନ ବନ,
ସୁନ୍ଦର ତା' ପାହାଡ଼ ନଈ ।
ସୁନ୍ଦର ଏଇ ଗଛଲତା,
ସୁନ୍ଦର ମଧୁ ପବନ ତା'ର,
ସୁନ୍ଦର ଏଇ ଦେଶରେ ମୋର,
*ସୁନ୍ଦର ଯେତେ ଭଉଣୀ ଭାଇ ।* (୦)

ଗୋପାଳ ପିଲାର ବଂଶୀ ସ୍ୱନ,
ମଧୁରତାରେ ଭରେ ପ୍ରାଣ ।
କେତେ ସୁନ୍ଦର ଦିଶନ୍ତି ଯେବେ,
*ଫେରନ୍ତି ତା'ର ଗୋଠରୁ ଗାଈ ।* (୧)

ଏ ଦେଶ ମାଟି କି ସୁନ୍ଦର,
ସୁନ୍ଦର ଘାସ ଫୁଲ ଫଳ,
ସୁନ୍ଦର ସେ ସୁନ୍ଦରତମ,
*ସବୁଠୁ ସେ ଜଗତସାଇଁ ।* (୨)



# ୧୩ - ସ୍ୱର୍ଗାଦପି ଗରିୟସୀ

ସ୍ୱର୍ଗାଦପୀ ଗରିୟସୀ ଜନନୀ ମା ଧରିତ୍ରୀ,
*ଦୟାମୟୀ କରୁଣା ତୁ ମା ତୋର ତୁଳନା ନାହିଁ । (୦)*

ଜୀବନ ସାରା ଦେଇ ମମତା - ପ୍ରତିଦାନେ ଖାଲି ଦୁଃଖ ପାଇଲୁ,
ଲୋତକ ଧାରା ଲୁଚାଇ ପରା - ହସି ହସି ମାଗୋ ସବୁ ସହିଲୁ ।
*ମାଗେ...... ନମାମୀ (୧)*

ଦିବସ ନିଶି ମଉନେ ବସି - ସହିଲୁ ତୁ ମାଗୋ ଦୁଃଖ ଯାତନା,
ନାହିଁ ତ ମନେ ହେଲେ ବି ଟିକେ-ଅନୁଶୋଚନା ଗୋ ତୁହି ମା କ୍ଷମା ।
*ମାଗୋ...... ନମାମୀ...... (୨)*

*('ଧରିତ୍ରୀ' ସିନେମାରୁ)*

# ୧୪- କି ସୁନ୍ଦର ଆହା

କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର,
ଧନ୍ୟ ମହାପ୍ରଭୁ ମହିମା ତୁମ୍ଭର ଅଟେ ଅନନ୍ତ ଅପାର । (୦)

ସୂର୍ଯ୍ୟ ଚନ୍ଦ୍ର ତାରା ତୁମ୍ଭରି ଆଜ୍ଞାରେ ବରଷନ୍ତି ଜ୍ୟୋତି ରାଶି,
ତୁମରି କୁସୁମ ପ୍ରତି ପ୍ରଭାତରେ ହସଇ ଆନନ୍ଦେ ଭାସି । (୧)

ପିତା ମାତା ବନ୍ଧୁ ଭାଇ ଭଗିନୀର ହୃଦୟେ ଦେଇଛ ପ୍ରୀତି,
ତେଣୁ ମୁଁ ସଂସାରେ ରହିଛି ଆନନ୍ଦେ ସୁଖ ଭୁଞ୍ଜି ନିତି ନିତି । (୨)

ଦିଅ ଭକ୍ତି ପ୍ରଭୁ ହୃଦୟେ ମୋହରି ବିରାଜ ନିତ୍ୟ ତହିଁରେ,
ସତ୍ୟ ପଥେ ରହି ତୁମରି ଆଶ୍ରାରେ ଯାଉ ମୋ ଦିନ ମହୀରେ । (୩)

# ୧୫- ସୃଷ୍ଟିରେ ଯହିଁ ପୁଷ୍ପ ବରଷେ

ସୃଷ୍ଟିରେ ଯହିଁ ପୁଷ୍ପ ବରଷେ,
ସେ ଦେଶ ଆମରି ଆମରି ଦେଶ ।
ତ୍ରିରଙ୍ଗା ଯହିଁ ରଙ୍ଗେ ଉଲ୍ଲାସେ
ସେ ଦେଶ ଆମରି ଭାରତ ବର୍ଷ ।
ସୃଷ୍ଟିରେ ଯହିଁ....... (୦)

ପର୍ବତ ନଦୀ ଶୋଭା ଶ୍ୟାମଳ
ସାଗର ଯାହାକୁ କରେ ଚଞ୍ଚଳ,
କୋଟି ଲୋକ କଣ୍ଠେ ସଙ୍ଗୀତ ଯହିଁ
ଗୋଟିଏ ସୁରରେ ନିତି ଉଚ୍ଛୁଳଇ ।
କୋଟିଏ କଣ୍ଠରେ ଗୋଟିଏ ଯେ ସୁର
ଖେଳାଏ ମମତା ପରାଣ ଭରେ ।
ସୃଷ୍ଟିରେ ଯହିଁ....... (୧)

ନାରୀ ଆମ ଦେଶ ଲକ୍ଷ୍ମୀ ସମ୍ଭାର
ଭକ୍ତି ଶାନ୍ତି ମୁକ୍ତି ପୂତ ଉପଚାର,
ଯହିଁ ଦେଶ ଶିଶୁ ଦେଶ ପାଇଁ ହସି
ପ୍ରାଣର ମମତା ଦେଇପାରେ ଝାସି,
ଯେଉଁ ଦେଶମାତା ତାହାରି ଶିଶୁରେ
ଢାଳୁଥାଏ ସଦା ଶୁଭ ଆଶିଷ ।
ସୃଷ୍ଟିରେ ଯହିଁ....... (୨)

# ୧୬- ଜନ୍ମଭୂମି

ତୁହି ମାଁ ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଟୁ ସରବେ ।
ତୋର ଶ୍ରୀଚରଣେ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ ।
ତୋ ଆନନ୍ଦେ ହୋଇବା ସୁଖି
*କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ॥୧॥*

ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତବର ।
ଦୁଇ ପାର୍ଶ୍ୱେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର ॥
ବିନ୍ଧ୍ୟ ଗିରିବର କଟିରେ
*ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ॥୨॥*

ଜନମିଲେ ତୋ କୋଳରେ କେତେ ଶୁର ବୀର ନରେ
ରାମଚନ୍ଦ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜୁନ ।
ମହାକବି ବେଦବ୍ୟାସ ବାଲମିକ କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହର ଗୁଣ ॥
ଚୈତନାଦି ମହାତ୍ମା ଜନେ
*ପ୍ରଚାରିଲେ ବିଷ୍ଣୁନାମ ଆନନ୍ଦ ମନେ ॥ ୩ ॥*

କେତେ କେତେ ପୁଣ୍ୟବତୀ କେତେ ପତିବ୍ରତା ସତୀ
କେତେ ବୀର ନାରୀ କେତେ ବୀର ଜନନୀ ।
ସମସ୍ତେ ତୋର ଦୁହିତା ପଦ୍ମିନୀ, ସାବିତ୍ରୀ, ସୀତା
ଦୁର୍ଗାବତୀ ଆଦି କେତେ ବୀର ରମଣୀ ॥
ନମଇଁ ମା ଭକତି ଭରେ
*ଅଧମ ଅକ୍ଷମ ସୁତ ତୋ ଚରଣରେ ॥୪॥*

● ମଧୁସୂଦନ ରାଓ

# ୧୭ - ମାତୃଭୂମି ପିତୃଭୂମି

ମାତୃଭୂମି ପିତୃଭୂମି ଧର୍ମ ଭୂ-ମହାନରେ
*ଏଇ ଭାରତ ଜନ୍ମଭୂମି କର୍ମଭୂମି ମୋରରେ ॥ (୦)*

ଏଇ ଭୂମିରୁ ଝଂକୃତ ପ୍ରଥମ ବେଦ ଝଙ୍କାର
ଏଇ ଭୂମିରୁ ଧ୍ୱନିତ ପ୍ରଥମ ବେଦ ଝଙ୍କାର
ଏହି ସେହି ହିନ୍ଦୁ ଭୂମି ଭାରତ ମହାନରେ ।
*ଏଇ ଭାରତ ଜନ୍ମଭୂମି କର୍ମଭୂମି ମୋରରେ ॥ (୧)*

ଏହାର ଧୂଳି ଅଙ୍ଗେ ବୋଳି ରାମ କୃଷ୍ଣ ମହାନ
ଏଇ ଧୂଳିରୁ ଜନ୍ମନେଲେ ସର୍ବଶ୍ରେଷ୍ଠ ସନ୍ତାନ
ଅଜ୍ଞାନୀ ଏ ବିଶ୍ୱେ ଦେଲେ ଜ୍ଞାନର ସନ୍ଧାନରେ
*ଏଇ ଭାରତ ଜନ୍ମଭୂମି କର୍ମଭୂମି ମୋରରେ ॥ (୨)*

ସ୍ୱର୍ଗଠାରୁ ଗରୀୟସୀ ବିଶ୍ୱବନ୍ଦ୍ୟା ଜନନୀ
ଜ୍ଞାନ ଧନ ଶକ୍ତି ପୂର୍ଣ୍ଣ ଜଗମନମୋହିନୀ
ବହୁ ବୀରଶୂର ପ୍ରସବିନୀ ଏ ମହାନରେ
*ଏଇ ଭାରତ ଜନ୍ମଭୂମି କର୍ମଭୂମି ମୋରରେ ॥ (୩)*



# ୧୮ - ଆମେ ସବୁ ଏକ

ଆମେ ସବୁ ଏକ (ବୋଲ) ଆମେ ସବୁ ଏକ (୪ଥର)
ପୂରୁବ କହେ ଆଉ ପଶ୍ଚିମ ବି କହେ,
ଉତ୍ତର କହେ ଆଉ ଦକ୍ଷିଣ ବି କହେ ।
ପୂରୁବ, ପଶ୍ଚିମ, ଉତ୍ତର, ଦକ୍ଷିଣ,
ଉତ୍ତର, ଦକ୍ଷିଣ, ପୂରୁବ, ପଶ୍ଚିମ ।
*ସଭିଏଁ ମିଶି ଗାଇବା ଆମେ ସବୁ ଏକ.... (୧)*

ଗାଇଲାବାଲା ତୁମେ ଗୀତ ତାଳେ ବୋଲ,
ନାଚିଲାବାଲା ତୁମେ ନାଚି ନାଚି ଗାଅ ।
ଗାଇବା, ନାଚିବା, ରଚିବା, ଗଢ଼ିବା,
ରଚିବା, ଗଢ଼ିବା, ଗାଇବା ନାଚିବା ।
*ସଭିଏଁ ମିଶି ଗାଇବା ଆମେ ସବୁ ଏକ..... (୨)*

ଗାଅ ହେ ସାଥି ତୁମେ ଆମ ସହ ଗାଅ,
ଚାଷୀ, ମୂଲିଆ, ଶିଳ୍ପୀ, ବଢ଼େଇ ବି ଗାଅ ।
ତନ୍ତୀ, ମୋଚି, ଧୋବା, ବଇଦ, କମାର,
କୁମ୍ଭାର, ବଣିଆ, କୁଲି, କାରିଗର ।
*ଏକ ସ୍ୱରରେ କହିବା ଆମେ ସବୁ ଏକ... (୩)*



# ୧୯- ରେ ପତାକା ଜାତିର ଗରବ

ରେ ପତାକା ଜାତିର ଗରବ ଜାତିର ଜୀବନ ପରାଣ ତୁହିରେ,
ଏକତା-ପୀରତି-ଶାନ୍ତି-ମୂରତି
*ସୁନ୍ଦର ତୋହର ସମାନ ନାହିଁରେ । (୦)*

ତୋହରି ଲାଗି କେତେ ଯେ ସମର ଲାଗିଛି ଜାଗିଛି କୀରତି ଅମର,
ତୋହରି ଲାଗି କେତେ କାରାଗାର
*ବରିଲେ ମରିଲେ ସମର - ଭୂଇଁରେ । (୧)*

ତୋହରି ଲାଗି ଦେଶେ ଦେଶେ ପୀରତି ହୋଇଛି ବଇରି ଶେଷେ,
ତୋହରି ଲାଗି ଅଇରି ଖଡ଼ଗ
*ଶରୀର ରକତେ ଦେଲେ ରଙ୍ଗାଇରେ । (୨)*

ଜାଣିଛି ଯେ ଥରେ ଜାତୀୟତା ସ୍ୱାଦୁ ଚାଖିଛି ଯେ ଥରେ ସ୍ୱାଧୀନତା ମଧୁ,
ପାରିଛି ଦେବାକୁ ଜୀବନ ଯୌବନ
*ମାନ ସନମାନ ବିମନ ନୋହିରେ । (୩)*

ଉଡ଼ିଛୁ, ଉଡୁଛୁ, ଉଡୁଥିବୁ ପରା ଯାବତ ଏ ଦେଶେ ଧରିଥିବ ଧରା,
ଯାବତ ଜାତିର ଜଣିଏ ପରାଣେ
*ଥିବ ତୁ ରାଜିବୁ ଗଗନ ଛୁଇଁରେ । (୪)*

ଧନ୍ୟ ଧନ୍ୟ ତୁହି ତିନି ରଙ୍ଗିଆରେ ଧରିଛୁ ଅଙ୍ଗରେ ସୁଖ ସାଙ୍ଗିଆରେ,
ଚରଖା ଦରିଦ୍ର-ସେବା-ଅବତାର
*ବକ୍ଷରେ ସେ ଚିହ୍ନ ନମୁଛି ମୁହିଁରେ । (୫)*

*• ଦାଆନିଧି ମହାନ୍ତି*

# ୨୦- ଜୟ ଭାରତ ଜନନୀ

ଚୀର ବନ୍ଦୀତା, ସୁ-ଶୋଭିତା
ଜୟ ଭାରତ ଜନନୀ....
ସରିତାମାଳ ତୋ ଗଙ୍ଗା ଯମୁନା
କାବେରୀ ବ୍ରହ୍ମପୁତ୍ର
ଅନେକ ଜାତିଏ ଏକ ପ୍ରାଣମନ
ଏକତାର ବ୍ରହ୍ମସୂତ୍ର
ବିଜୟର ନେତ ଆଜି ବି ଲହରେ
ସ୍ୱାଧୀନ ମାଟି ସୁରଭି କହେଁରେ
ଅହିଂସା ଯୁଗେ ଶାନ୍ତି ପ୍ରଦାୟିନୀ
ଜୟ ଭାରତ.....
ସବୁଜ ବନାନୀ ଲତିକା ଗହଳ ବନ
ସବୁଜ ସଦା ତୋ ସୀମନ୍ତ
ତୋ ବକ୍ଷେ ଜନମି ଧନ୍ୟ ଏ ଜୀବନ
ସାହସିକତାର ନାହିଁ ଅନ୍ତ
ଶହୀଦ ଲଢ଼ି ଲୋଟିଲେ ଧରାରେ
ଜୀବନ ଡେଇ ତୋହରି ପୟରେ
ଦେଇଗଲେ ସ୍ୱାଧୀନତା ସଂଜିବନୀ
ଜୟ ଭାରତ ଜନନୀ....
ସଂଜ ସକାଳ ଛୁଏଁ ନିରନ୍ତର ତୋ'ର
ପୟର ଅଥଳ ସାଗର
ହୀମମଣ୍ଡଳ ଶୋଭାବନ କରେ
ହୋଇ ମୁକୁଟ ଯା'ର
ସେଇ ମାଆ କୋଳେ ରହି ସେନେହରେ
ବୁଡ଼ିଯିବା ଆସ ତାହାରି ପ୍ରେମରେ
ରଙ୍ଗେ ରଙ୍ଗିଯାଉ ପ୍ରତିଟି ଧମନୀ
ଜୟ ଭାରତ....

● ପଦ୍ମନାଭ ମାଳୀ

# ୨୧ - ମାଦଳ ବାଜିଲା

ମାଦଳ ବାଜିଲାରେ ଘୁମୁରା ବାଜିଲା
ଆମେ ସବୁ ଅଟୁ ଭାଇ ବାଜିରାଉତ ଚେଲାରେ
ଗୁଳି ଚୋଟେ ପ୍ରାଣ ଯେହୁ ଦେଲା ।

ଅନ୍ଧାରି ମୁଲକ ମଧ୍ୟେ ବିହୁଡ଼ି ଜାଳିଲାରେ
ବାର ବରଷର ମାଝି ପିଲା ।
ଅନ୍ଧାରି ମୁଲକରେ ଅନ୍ଧାର ମୁଲକେ
ଗୁଳି ଆବାଜରେ ବୀର ବାଜି ଆସି ଡାକେରେ
ଜାଗିଉଠ ଗଡ଼ଜାତି ଲୋକେ ।

ସେଇ ରାଇଜ ପିଲାରେ ଆମେ ସେଇ ରାଇଜ ପିଲା
ଯେଉଁ ରାଇଜ ପିଲା ହସି ହସି ପ୍ରାଣ ଦେଲା
ଦେଶ ଆଗେ କିର୍ତ୍ତୀ ରଖିଗଲା ।

*(ଅନୁଗୋଳ ବାଜି ରାଉତ ଛାତ୍ରାବାସର ଗୀତ)*



# ୨୨- ଜାଗ ହେ ସାଥି

ମଶାଲ ଜାଳ, ଆଗେଇ ଚାଲ ଗାଁ ଗାଁର ସାଥି ହେ,
ଅନ୍ଧାରକୁ ଦୂରେଇ ଦେବା ଗାଁ ଗାଁର ସାଥି ହେ ।

କୁଡ଼ିଆ ଗର୍ଜେ, ମୂଲିଆ ଗର୍ଜେ, ଗରଜେ ଖେତ ବାଡ଼ିରୁ,
କେତେ ଦିନ ଏମିତି ଲୁଟିବେ, ଆମ ଗାଁର ଲୋକଙ୍କୁ ?
ଲଢ଼େଇ ବିନା କିଛି ମିଳେନା, ଏଇ କଥା ଆମେ ଜାଣିଛେ,
ଲଢ଼େଇ ଆମ ସରିବ ନାହିଁ ଦେଶର ଗାଁ ଗାଁରେ ।

ଥରକୁ ଥର ଶୋଷଣ ସହି ବନ୍ଧା ତ ଶିକୁଳିରେ,
ଶିକୁଳି ଭାଙ୍ଗି ଜାଗରେ ଆଜି ଗାଁ ଗାଁରୁ ମୋ ସାଥୀ ହେ ।
ଲାଲ ସୂରୁଯ କେବେ ଉଇଁବ ଦେଶର ସବୁ ଗାଁଆରେ,
ପାଦମିଳାଇ ଆମେ ଚାଲିବା ଗାଁ ଗାଁରୁ ସାଥି ହେ ।

ଯେଉଁ ସକାଳ ଆମକୁ ଆଜି ଫିକା ଓ ମାନ୍ଦା ଲାଗେରେ,
(ଆମ) ରକ୍ତ ରଙ୍ଗ ଭରିବା ଏଠି ଗାଁ ଗାଁରେ ଆମେରେ ।
ଭାରତ ଆମ ଜିଇଁ ଉଠିବ ଦେଶର ସବୁ ଗାଁଆଁରେ,
ବହି ପଢ଼ିବା ବାଟ ଖୋଜିବା ଗାଁ ଗାଁରେ ଆମେରେ ।



• ମୂଳ ହିନ୍ଦୀ : ବଲ୍ଲି ସିଂହ ଚିମା

# ୨୩ - ମୁଁ ଏକ ନଈ

ମୁଁ ଏକ ନଈ ଯାଉଛି ବହି,
ଜାଣେନି ସତରେ ଯାଉଛି କାହିଁ ।
କିଏ ମୋ କାନରେ ଦେଉଛି କହି
*ଚାଲ୍ ଆଗେଇ, ନଈ ଚାଲେ ଆଗେଇ - (୦)*

କେବେ ମୁଁ ମାପିନି ମୋ ଯିବା ବାଟରେ
କିଏ ବା କେତେ ଟାଣୁଆ,
ବାଟ ଖୋଜି ଚାଲେ ମୋ ବଳକୁ ନେଇ
ଲଢ଼େଇ ମୁଁ କରିବି କିଆଁ ?
କିଏ ମୋ କାନରେ ଦେଉଛି କହି,
*ଚାଲ୍ ଆଗେଇ ନଈ ଚାଲେ ଆଗେଇ - (୧)*

ଚାଲୁ ଚାଲୁ କେବେ ସାଥି ମିଳିଯାଏ
ମିଶିଯାଏ ମୋ ଦେହ ମନ,
କେବେ ମେଲିଦିଏ ଶାଖାଟିଏ ପୁଣି
ହୁଏନି ମୁଁ କେବେ ବି ଭିନ୍ନ ।
କିଏ ମୋ କାନରେ ଦେଉଛି କହି,
*ଚାଲ୍ ଆଗେଇ, ନଈ ଚାଲେ ଆଗେଇ - (୨)*

ଧନ୍ୟ ତୁମେ ସ୍ରଷ୍ଟା, ଧନ୍ୟ ତୁମ ସୃଷ୍ଟି
ଯୋଗାଇଛ କେତେ ବଳ,
ଚାଲିଥିବି ମୁହିଁ ଅବିରାମ ହୋଇ
ଜିଇଁ ଥିବି ଯେତେ କାଳ ।
କିଏ ମୋ କାନରେ ଦେଉଛି କହି,
*ଚାଲ ଆଗେଇ, ନଈ ଚାଲେ ଆଗେଇ - (୩)*

● ବିନୟକୃଷ୍ଣ ପଟ୍ଟନାୟକ

# ୨୪ - ମୁଁ ଏଇ ଆକାଶର

ମୁଁ ଏଇ ଆକାଶର ଶିଶିର ବିନ୍ଦୁଟିଏ
ସୂରୁଜ ହସେ ଦିନେ ହସିବି,
ସକାଳ ନଦୀ ତୀରେ ବାଲିର ଅଗଣାରେ
*ମୁକୁତା ବିନ୍ଦୁଟିଏ ତୋଳିବି । (୦)*

ଝରି ଝରି ଏ ଝରଣା ଦେଖ
ଦୂର ପଥରେ ଧାଏଁ,
ଉଚ୍ଛୁଡ଼ା ଯେତେ ହସର ଢେଉ
ତା' ପାଇଁ ଖେଳିଯାଏ ।
ଭରସାଭରା ସୁନେଲୀ ସେତୁ
ମନେ ତା' ବାନ୍ଧିଦିଏ
କେବେ ନା କେବେ ପାଇବ ଖୋଜି
ଦୂର ସାଗର ସିଏ ।
ସେ ତ ସରାଗେ ଝରିଯାଏ
*ସାଗର ଖୋଜି ପାଏ । (୧)*

ସିରି ସିରି ଏ ପବନ ଦେଖ
ଆସଇ ଧୀରେ ବହି,
ସୁରଭି ଭରା ବାରତା କେତେ
ଯାଏ ସେ ଫୁଲେ କହି ।
ପୁଲକି ଉଠେ ସାଗର ନଈ
ପରଶ ପାଇ ତା'ର,
ଗହନ ବନ ମଧୁ ବିତାନ
ଯା' ପାଇଁ ଉଜାଗର ।
ସେଇ ବାରତା ହୃଦେ ନେଇ
*ମୁଁ ଯେ ସରାଗେ ଯିବି ବହି । (୨)*

● *ଶାନ୍ତିଲତା ରାୟ*

# ୨୫- ଇଟିକିଲି ମିଟିକିଲି

ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ ।
ତୁମର ଆମର ନାଲି ପଇଁଚ । (୦)

ଝିଲିମିଲି ତରା ଦିଏ ନାହିଁ ଧରା
ଫୁଲ ଫୁଲେ ଭରା ଚିକିମିକି ହୀରା
ଛୁଇଁ ଛୁଇଁ ଯାଏ ମେଘ, ଜହ୍ନ ଆଉ ତାରା । (୧)

ଜହ୍ନ ମାମୁଁ ଦେଶ ଯିବା ପିଲେ ଆସ
ଅଜା ମୋଡ଼ି ନିଶ ହସୁଥିବେ ହସ
ନାଚି ନାଚି ଖୋଇ ଦେବେ ଆଉ ଖଜା କୋରା । (୨)

ମାମୁଁ ଦେଖେଇବେ ଯାତରାକୁ ନେବେ
କଣ୍ଢେଇ କିଣିବେ ସିନିହରେ ଦେବେ
ପକ୍ଷୀରାଜେ ବୁଲାଇବେ ଏ ଦୁନିଆ ସାରା । (୩)



# ୨୬- ଆମେ ହସିଲେ

*ଆମେ ହସିଲେ ଦୁନିଆ ହସେ ହସେ ଆକାଶ ତାରା,*
*ହସି ଉଠଇ ବଉଦ ତଳୁ ଜୁନି ଚାନ୍ଦଟା ପରା । (୦)*

ଲତା ଗହଳୁ ଫୁଲଟି ହସେ ହସେ ପରଜାପତି,
ନୀଳ ଆକାଶେ ଚଢ଼େଇ  ହସେ ଗାଏ ପବନ ଗୀତି
ସାଗର ହସେ ସୂରୁଜ ହସେ ଶୁଖିଲା ମାଟି ହସେ,
ହସି ହସିକା ଦୂର ଆକାଶକୁ ବରଷା କେତେ ଖସେ
*ଆମ ହସିଲେ.... (୧)*

ଆମ ହସରେ ଶୁଖାଇ ଦେବୁ ସବୁରି ଆଖି ଲୁହ,
ସବୁରି ଓଠେ ଝରାଇ ଦେବୁ ହସର ସୁନା ସୁଅ ।
ଗାଇବୁ ଆମେ ନାଚିବୁ ଆମେ ବଜାଇ କେତେ ବାଜା,
କରିବୁ ମଜା ଆମେରେ ସବୁ ନୂଆ ଦୁନିଆ ରାଜା
*ଆମେ ହସିଲେ... (୨)*

● ଜୟନ୍ତୀ ତ୍ରିପାଠୀ



# ୨୭- ଆହେ ଦୟାମୟ

ଆହେ ଦୟାମୟ ବିଶ୍ୱବିହାରୀ
ଘେନ ଦୟାବହି ମୋର ଗୁହାରି ।

ଜଳ ସ୍ଥଳ ବନ ଗିରି ଆକାଶ
ତୁମ ଲୀଳା ସବୁଠାରେ ପ୍ରକାଶ ।
ତୁମ୍ଭେ ଶୁଭ ବୁଦ୍ଧି ପରା ଶିଖାଅ
ତୁମ୍ଭେ ଭଲ ବାଟ ପରା ଦେଖାଅ ।

ମୋର କାମକୁ କରାଅ ସରସ
ମୋର ମୁଖେ ଦିଅ ଚିର ହରଷ ।
ତୁମ୍ଭ ଚରଣରେ ମୋର ଭକତି
ଦିଅ ବିପଦେ ସାହସ ଶକତି ।

ମୋତେ ଖଳ ଅଳସୁଆ ନିକଟେ
ନିଅ ନାହିଁ ସୁଖେ ଅବା ସଂକଟେ ।
ଦୁଃଖୀ ଅରକ୍ଷିତ ସେବା କାରଣେ
ବଳ ଦିଅ ମୋର କର ଚରଣେ ।

ସତ କହିବାକୁ କିଆଁ ଡରିବି
ସତ କହି ପଛେ ମଲେ ମରିବି ।
ମୋତେ ଏତିକି ଶିଖାଅ ସାଇଁ ହେ
ମୋର ଧନ ଜନ ଲୋଡ଼ା ନାହିଁ ହେ ।

# ୨୮ - କେଉଁ ନାମ ଧରି ଡାକିବି ତୁମକୁ

କେଉଁ ନାମ ଧରି ଡାକିବି ତୁମକୁ
ତୁମେ ଯେ ସର୍ବନାମ । (ଘୋଷା)

ଆଲୋକ ତୁମକୁ ନ ପାରେ ଦେଖାଇ
ତୁମେ ଯେ ଦେଖାଅ ତାହାରେ,
ତୁମେ ଯେ ବେଢ଼ିଛ କୋଟି ବିଶ୍ୱର
ସବୁରି ଭିତରେ ବାହାରେ ।
ସକଳ ପରାଣ ଝୁରଇ ତୁମକୁ
ତୁମେ ହେ ବିଶ୍ୱ ପ୍ରାଣ । (୧)

ଲୁହ ହୋଇ ତୁମେ ଝରିପଡ଼ ପରା
କେତେ ଯେ ନୟନ କୋଣରୁ,
ହସ ହୋଇ ପୁଣି ଫୁଲ ପରି ଫୁଟ
କେତେ ଯେ ନରମ ଅଧରୁ ।
ସବୁରି ଭିତରେ ଭରିଦିଅ ପ୍ରଭୁ
ତୁମେ ହିଁ ଅମୃତ ପ୍ରେମ । (୨)

*('ସିନ୍ଦୁରବିନ୍ଦୁ' ସିନେମାର ଏକ ଲୋକପ୍ରିୟ ଗୀତ)*



# ୨୯- ରେ ଆମ୍ଭନ୍....

ରେ ଆମ୍ଭନ୍.... ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ
ନିଶବ୍ଦେ ଜୀବନ ସ୍ରୋତ ଧାଉଁଚି କିପରି
ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।
*ରେ ଆମ୍ଭନ୍..... (୦)*

କି ବେଗରେ ଯାଉଅଛି ଚାଲି
ସେହି ସ୍ରୋତ ସଙ୍ଗେ ମିଶି ଜୀବନର ସୁଖରାଶି
ଯାହାର ସ୍ମରଣେ ନର ଭୋକ ଶ୍ୱାସ ଭୁଲି
ଅତୀତକୁ ଉଦ୍‌ବୋଧଇ ବୃଥା ଡାକି ଡାକି ।
*ରେ ଆମ୍ଭନ୍.... (୧)*

ହେ ଈଶ୍ୱର, ପତିତତାରଣ
ପ୍ରାଣାରାମ ନିରଞ୍ଜନ, ଭୟ ବିଘ୍ନ ବିନାଶନ,
ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ
ସଂସାର ବିଷାକ୍ତ ନେତ୍ରେ ତୁମ୍ଭେ ହେ ଅଞ୍ଜନ ।
*ରେ ଆମ୍ଭନ୍..... (୨)*

*('ମମତା' ସିନେମାର ଏକ ଗୀତ)*



# ୩୦- ମା ତୁମେ ମମତାର......

ମା ତୁମେ ମମତାର ସୀମାହୀନ ସାଗର,
*ମା ତୁମେ ଆମପାଇଁ ଦେବତାର ମନ୍ଦିର (୦)*

ତୁମେ ସେ ସେନେହ ମୋତି ଆମ ପାଇଁ ଝଲକ
ନିଭାଇଛ ଅମାରାତି ମନେ ଭରି ପୁଲକ ।
ତୁମେ ଯେ ସେନେହମୟୀ ସେନେହର ଝର
*ମା ତୁମେ ମମତାର..... (୧)*

ଏ ଆଖି ଦେଖୁଛି ଯାହା ତୁମ ପ୍ରୀତି ଶରଧା
ଆମ ଦୁଃଖ ଦୁଃଖୀ ହୋଇ କର ସୁଖ ସଉଦା
ଆମ ମୁଖେ ହସ ତୁମ ମନେ ଖୁସି ଆସର
ତୁମରି ଆଶିଷେ ମାଗୋ ହସୁ ଆମ ସଂସାର
*ମା ତୁମେ ମମତାର...... (୨)*

*('ଛଲ୍‌କା' ସିନେମାର ଏକ ଲୋକପ୍ରିୟ ଗୀତ)*



# ୩୧ - ହିନ୍ଦୁ ନୁହେଁ କି ମୁସ୍‌ଲିମ୍ ନୁହେଁ

ହିନ୍ଦୁ ନୁହେଁ କି ମୁସ୍‌ଲିମ୍ ନୁହେଁ ମଣିଷ ଆମ ନାଁ
*ସାରା ଦୁନିଆ ଆମରି ଘର ଭାରତ ଆମ ମାଆ । (୦)*

ଏ ନୀଳ ଆକାଶ ନୀଳ ସାଗର,
ସେ ନଦୀ ଝରଣା କେତେ ନିଝର ।
ତା'ଠାରୁ ନିଛର ଏ ସୁନା ମାଟି,
ଅତି ଆପଣାର ଏ ମଣିଷ ଜାତି ।
*ଭେଦ ପାଚେରୀ କାହିଁକି ହେବ ଭିତରେ ଆମ ଠିଆ । (୧)*

ଇସାଇ, ନାନକ, ରାମ, ରହିମ୍,
ଆମ ପାଇଁ ସତେ କେତେ ମହାନ୍
ଏ ସବୁଠୁ ବଳି ଦେଶ ମହାନ
କେତେ ନିବିଡ଼ ଏ ସାରା ବନ୍ଧନ ।
*ଆମେ ସଭିଏଁ ସେବକ ତା'ର ସିଏ ତ ଆମ ମାଆ । (୨)*

ମଣିଷ ଆମେରେ ଶାନ୍ତି ପ୍ରେମର,
ଭେଦଭାବ ନାହିଁ ଶତ୍ରୁ ଆମର ।
ସବୁରି ଓଠେ ହସ ଫୁଲ ଫୁଟିବ,
ସବୁରି ଘରେ ପୁଣି ଦୀପ ଜଳିବ ।
*ଏଇ ଭାବନା ମନରେ ରଖି ଚଳାଇ ନେଇ ନାଆ । (୩)*



# ୩୨ - ଆମେ ହିନ୍ଦୁ ଆମେ ମୁସଲମାନ

ଆମେ ହିନ୍ଦୁ ଆମେ ମୁସଲମାନ,
ଭାରତ ଆମର ଜନ୍ମମାଟି କବର ଆମର ହିନ୍ଦୁସ୍ଥାନ
*ଆମେ ହିନ୍ଦୁ ଆମେ ମୁସଲମାନ । (୦)*

ଆମେ କୋଟି କୋଟି ଭାରତବାସୀ ଚାଟ କାରିଗର ମୂଲିଆ ଚାଷୀ
ଆମେ ଅଟୁ ଶିଖ ବୌଦ୍ଧ ପାର୍ଶୀ ଆମେରେ ଜଇନ ଖିରସ୍ତାନ ।
*ଆମେ ହିନ୍ଦୁ ଆମେ ମୁସଲମାନ । (୧)*

ମସ୍‌ଜିଦ୍ ଯେଉଁ ମାଟିରେ ଗଢ଼ା ଗୀରଜା ମନ୍ଦିର ତହିଁର ଛିଡ଼ା
ଏକା ପାଣି ଏକା ପବନେ ବଞ୍ଚୁ ଏକା ରକ୍ତରେ ଗଢ଼ା ଆମର ଜାନ୍ ।
*ଆମେ ହିନ୍ଦୁ ଆମେ ମୁସଲମାନ । (୨)*

ଆମ ହିମଗିରି ଆମରି ଗଙ୍ଗା ଯେତେ ଭାଙ୍ଗିଲେ ସେ ନୋହିବ ଭଙ୍ଗା
ସତ୍ୟ ଅହିଂସା ଆମ ଦେବତା (ଆମେ) ତା'ରି ତେଜରେ ତେଜୀୟାନ ।
*ଆମେ ହିନ୍ଦୁ ଆମେ ମୁସଲମାନ । (୩)*

ଆମ ଇତିହାସ ଗଢ଼ିଛୁ ଆମେ ବିଶ୍ୱ ଚମକାଇ ଆମରି ନାମେ
ଡରି ନାହୁଁ କେବେ ଡରିବୁ ନାହିଁ ଜୀବନ କରିବୁ କୋରବାନ୍ ।
*ଆମେ ହିନ୍ଦୁ ଆମେ ମୁସଲମାନ । (୪)*

ଆମ ଦେଶକୁ ଯେ କରିବ ଲୋଭ ତିଳେ ହେଲେ ତାର ନୋହିବ ଲାଭ
ଇଞ୍ଚେ ହେଲେ ଜାଗା ଛାଡ଼ିବୁ ନାହିଁ ନୋହିବୁ କଦାପି ବେଇମାନ୍
*ଆମେ ହିନ୍ଦୁ ଆମେ ମୁସଲମାନ । (୫)*

# ୩୩- ବାପୁଙ୍କ ପ୍ରିୟ ଭଜନ

ବୈଷ୍ଣବ ଜନ ତୋ ତେନେ କହିୟେ ଜେ ପୀଡ଼୍ ପରାଈ ଜାଣେ ରେ,
ପର୍ ଦୁଃଖେ ଉପକାର୍ କରେ ତୋୟେ ମନେ ଅଭିମାନ ନ ଆଣେ ରେ,
ସକଲ ଲୋକମାଁ ସହୁନେ ବନ୍ଦେ ନିନ୍ଦା ନ କରେ କେନୀରେ,
ବାଚ କାଛ, ମନ ନିଶ୍ଚଳ ରାଖେ ଧନ ଧନ ଜନନୀ ତେନୀ ରେ ।

ସମଦୃଷ୍ଟି ନେ ତୃଷ୍ଣା ତ୍ୟାଗୀ, ପର ସ୍ତ୍ରୀ ଜେନେ ମାତରେ,
ଜିହ୍ବା ଥକି ଅସତ୍ୟ ନ ବୋଲେ, ପର୍ ଧନ୍ ନବ୍ ଝାଲେ ହାଥ୍ ରେ ।

ମୋହ ମାୟା ବ୍ୟାପେ ନହି ଜେନେ ଦୃଢ଼ ବୈରାଗ୍ୟ ଜେନା ମନ ମାଂ
ରାମନାମଶୁଂ ତାଲୀ ଲାଗୀ ସକଲ ତୀରଥ ତେନା ତନା ମାଂ ରେ ।

ବଣ ଲୋଭୀ ନେ କପଟ ରହିତ ଛେ, କାମ କ୍ରୋଧ ନିବାର୍ୟରେ,
ଭଣେ ନରସୈୟୋଁ ତେନୁ ଦରଶନ୍ କରତା କୁଳ ଏକୌ ତେରେ ତାର୍ୟାରେ ।



# ୩୪- ଧନଧାନ୍ୟେ ପୁଷ୍ପେ ଭରା

ଧନଧାନ୍ୟେ ପୁଷ୍ପେଭରା ଆମାଦେର୍ ଏଇ ବସୁନ୍ଧରା
ତାହାର୍ ମାଝେ ଆଛେ ଦେଶ୍ ଏକ୍ ସକଲ୍ ଦେଶେର୍ ସେରା
(ଓସେ) ସ୍ୱପ୍ନ ଦିୟେ ତଇରୀ ସେ ଦେଶ ସ୍ମୃତି ଦିୟେ ଘେରା
ଯେମନ୍ ଦେଶ୍‌ଟୀ କୋଥାଏ ଖୁଁଜେ ପାବେ ନାକୋ ତୁମି ଓସେ
ସକଲ୍ ଦେଶେର୍ ରାନୀ ସେ ଯେ ଆମାର୍ ଜନ୍ମଭୂମି
*ସେ ଯେ ଆମାର୍ ଜନ୍ମଭୂମି..... (୧)*

ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା କୋଥାୟ ଯେମନ୍ ଉଜ୍ଜଲ୍ ଧାରା
କୋଥାୟ ଯେମନ୍ ଖେଲେ ତଡ଼ିତ୍ କୃଷ୍ଣ କାଲୋ ମେଘେ,
(ତାରା) ପାକ୍ଷୀର ଡାକେ ଘୁମିୟେ ପଡ଼େ, ପାକ୍ଷୀର ଡାକେ ଜେଗେ...
*ଯେମନ୍ ଦେଶ୍‌ଟି...... (୨)*

ଏତ ସ୍ନିଗ୍ଧ ନଦୀ କାହାର୍ କୋଥାୟ ଯେମନ୍ ଧୂମ୍ର ପାହାଡ୍,
କୋଥାୟ ଯେମନ୍ ହରିତ କ୍ଷେତ୍ରେ ଆକାଶ୍ ତଲେ ମେଶେ
ଯେମନ ଧାନେର୍ ଉପର୍ ଢେଉ ଖେଲେ ଜାଏ, ବାତାସ୍ କାହାର୍ ଦେଶେ,
*ଯେ ମନ୍ ଦେଶଟି............ (୩)*

ପୁଷ୍ପେ ପୁଷ୍ପେ ଭରା ଶାଖି, କୁଞ୍ଜେ କୁଞ୍ଜେ ଗାୟେ ପାକ୍ଷୀ
ଗୁଁଜରିୟା ଆସେ ଓଲି, ପୁଂଜେ ପୁଂଜେ ଧେୟେ
ତାରା ଫୁଲେର୍ ଉପର୍ ଘୁମିୟେ ପଡ଼େ ଫୁଲେର୍ ମଧୁ ଖେୟେ
*ଯେମନ୍ ଦେଶ୍‌ଟି..... (୪)*

ଭାୟେର ମାୟେର ଯେତୋ ସ୍ନେହ କୋଥାୟ ଗେଲେ ପାବେ କହ
ଓ ମାଁ ତୋମାର ଚରଣ୍ ଦୁଟି, ବକ୍ଷେ ଆମାର ଧରି
ଆମାର ଏଇ ଦେଶେନେ ଜନ୍ମ ଜେନୋ ଏଇ ଦେଶେତେଇ ମରି
*ଯେମନ୍ ଦେଶଟି.... (୫)*

# ୩୫- ଯଦି ତୋର ଡାକ ଶୁନେ

ଯଦି ତୋର୍ ଡାକ୍ ଶୁନେ କେଉ ନା ଆସେ
ତବେ ଏକ୍ଲା ଚଲୋରେ ।
*ଏକ୍ଲା ଚଲୋ, ଏକ୍ଲା ଚଲୋ, ଏକ୍ଲା ଚଲୋ, ଏକ୍ଲା ଚଲୋରେ ॥*

ଯଦି କେଉ କଥା ନା କୟ୍
ଓରେ ଓରେ ଓ ଅଭାଗା କୟ କଥା ନା କୟ,
ଯଦି ସବାଇ ଥାକେ ମୁଖ୍ ଫିରାୟେ ସବାଇ କଁରେ ଭୟ
ତବେ ପରାନ୍ ଖୁଲେ
*ଓ ତୁଇ ମୁଖ ଫୁଟେ ତୋର ମନେର୍ କଥା ଏକ୍ଲା ବଲୋରେ ॥*

ଯଦି ସବାଇ ଫିରେ ଯାୟ,
ଓରେ ଓ'ରେ ଓ ଅଭାଗା ସବାଇ ଫିରେ ଯାୟ,
ଯଦି ଗହନ୍ ପଥେ ଯାବାର୍ କାଲେ କେଉ ଫିରେ ନା ଚାୟ । (୨ଥର).

ତବେ ପଥେର କାଁଟା
*ଓ ତୁଇ ରକ୍ତମାଖା ଚରନ୍ ତଳେ ଏକଲା ଦଲୋରେ ॥*

ଯଦି ଆଲୋ ନା ଧରେ,
ଓରେ ଓ'ରେ ଓ ଅଭାଗା ଆଲୋ ନା ଧରେ,
ଯଦି ଝଡ୍ ବାଦଲେ ଆଁଧାର୍ ରାତେ ଦୁଆର୍ ଦେୟ୍ ଘରେ
ତବେ ବଜ୍ରାନଲେ
*ଆପନ୍ ବୁକେର୍ ପାଁଜର୍ ଜ୍ୱାଲିୟେ ନିୟେ ଏକ୍ଲା ଜ୍ୱଲୋରେ ॥*

*● ରବୀନ୍ଦ୍ର ନାଥ ଠାକୁର*

# ୩୬- ଅନ୍ତର ମମ ବିକଶିତ କରୋ

ଅନ୍ତର ମମ ବିକଶିତ କରୋ ଅନ୍ତରତର ହେ
ନିର୍ମଳ କରୋ ଉଜ୍ଜ୍ୱଳ କରୋ ସୁନ୍ଦର କରୋ ହେ,
ଜାଗ୍ରତ କରୋ ଉଦ୍ୟତ କରୋ ନିର୍ଭୟ କରୋ ହେ,
ମଙ୍ଗଳ କରୋ ନିରଳସ ନିଃସଂଶୟ କରୋ ହେ ।

ଯୁକ୍ତ କରୋ ହେ ସବାର ସଙ୍ଗେ ମୁକ୍ତ କରୋ ହେ ବନ୍ଧ,
ସଞ୍ଚାର କରୋ ସକଳ କର୍ମେ ଶାନ୍ତ ତୋମାର ଛନ୍ଦ ।

ଚରଣପଦ୍ମେ ମମ ଚିତ୍ତ ନିଃସ୍ପନ୍ଦିତ କରୋ ହେ,
ନନ୍ଦିତ କରୋ ନନ୍ଦିତ କରୋ ନନ୍ଦିତ କରୋ ହେ ।

● ରବୀନ୍ଦ୍ର ନାଥ ଠାକୁର



# ୩୭- ଆଗୁନେର୍ ପରଶ୍‌ମନି

ଆଗୁନେର୍ ପରଶ୍‌ମନି ଛୋଆଁଓ ପ୍ରାନେ
ଏ ଜୀବନ ପୂନ୍ୟ କରୋ ଦହନ ଦାନେ
ଆମାର୍ ଏଇ ଦେହଖାନି ତୁଲେ ଧରୋ
ତୋମାର୍ ଓଇ ଦେବାଲୟେର୍ ପ୍ରଦୀପ୍ କରୋ
ନିଶିଦିନ୍ ଆଲୋକ୍ ଶିଖା ଜ୍ୱଲୁକ୍ ଗାନେ ।।

ଆଁ ଧାରେର୍ ଗାୟେଗାୟେ ପରଶ୍ ତବ
ସାରାରାତ୍ ଫୋଟାକ୍ ତାରା ନବ ନବ
ନୟନେର୍ ଦ୍ରିଷ୍ଟିହତେ ଘୁଂଚବେ କାଲୋ,
ଯେ ଖାନେ ପଡ଼ବେ ସେଥାୟେ ଦେଖ୍‌ବେ ଆଲୋ
ବ୍ୟଥା ମୋର ଉଠ୍‌ବେ ଜ୍ୱଲେ ବର୍ଦ୍ଧ୍ୱପାନେ ।।

● ରବୀନ୍ଦ୍ର ନାଥ ଠାକୁର



# ୩୮ - ଓରେ ନୂତନ ଯୁଗର ଭୋରେ

ଓରେ ନୂତନ୍ ଯୁଗର୍ ଭୋରେ
ଦିସ୍ ନେ ସମୟ କାଟିଯେ ବୃଥା ସମୟ ବିଚାର କରେ ॥

କୀ ରବେ ଆର୍ କୀ ରବେ ନା, କୀ ହବେ ଆର୍ କୀ ହବେ ନା
ଓ ରେ ହିସାବି
ଏ ସଂଶୟେର୍ ମାଝେ କି ତୋର ଭାବ୍‌ନା ମିଶାବି ?

ଓରେ ନୂତନ୍ ଯୁଗର୍ ଭୋରେ
ଯେମନ୍ କରେ ଝର୍ନା ନାମେ ଦୁର୍ଗମ ପର୍ବତେ
ନିର୍ଭାବନାୟ ଝାଁପ ଦିଏ ପଡ୍ ଅଜାନିତେର୍ ପଥେ ।

ଜାଗ୍‌ବେ ତତଇ ଶକ୍ତି ଯତଇ ହାନ୍‌ବେ ତୋରେ ମାନା
ଅଜାନାକେ ବଶ୍ କରେ ତୁଇ କର୍‌ବି ଆପନ୍ ଜାନା ।

ଚଲାୟ ଚଲାୟ ବାଜ୍‌ବେ ଜୟେର୍ ଭେରୀ
ପାୟର ବେଗେଇ ପଥ କେଟେ ଯାୟ, କରିସ୍ ନେ ଆର୍ ଦେରି ॥
ଓରେ ନୂତନ ଯୁଗର ଭୋରେ ।

• ରବୀନ୍ଦ୍ର ନାଥ ଠାକୁର



# ୩୯ - ହ୍ରିଦୟ ବୀଣାର ମାଝେ

ଆଲୋ ଆମାର୍, ଆଲୋ ଓଗୋ, ଆଲୋ ଭୁବନ୍‌ଭରା,
ଆଲୋ ନୟନ - ଧୋଓ ଆମାର, ଆଲୋ ହ୍ରିଦୟ ଭରା ॥

ନାଚେ ଆଲୋ ନାଚେ ଓ ଭାଇ ଆମାର ପ୍ରାଣେର କାଛେ
ବାଜେ ଆଲୋ ବାଜେ ଓ ଭାଇ ହ୍ରିଦୟ ବୀଣାର ମାଝେ.
ଜାଗେ ଆକାଶ୍, ଛୋଟେ ବାତାସ୍, ହାସେ ସକଲ୍ ଧରା ॥

ଆଲୋର୍ ସ୍ରୋତେ ପାଲ ତୁଲେଛେ ହାଜାର୍ ପ୍ରଜାପତି
ଆଲୋର୍ ଢେଉୟେ ଉଠ୍‌ଲୋ ନେଚେ ମଲ୍ଲୀକା ମାଲତୀ
ମେଘେ ମେଘେ ସୋନା, ଓ ଭାଇ, ଯାଏନା ମାନିକ ଗୋନା
ପାତାଏ ପାତାଏ ହାସି, ଓ ଭାଇ, ପୁଲକ୍ ରାଶି ରାଶି
ସୁର ନଦୀର କୂଲ୍ ଡୁବେଛେ ସୁଧା - ନିଝର୍ - ଝରା ।

• *ରବୀନ୍ଦ୍ର ନାଥ ଠାକୁର*



# ୪୦ - ତୁମି କେମନ୍ କରେ ଗାନ୍

ତୁମି କେମନ୍ କରେ ଗାନ୍ କର ହେ ଗୁନୀ,
ଆମି ଅବାକ୍ ହୟେ ଶୁନି କେବଲ ଶୁନି ।

ସୁରେ ଆଲୋ ଭୁବନ୍ ଫେଲେ ଛେୟେ,
ସୁରେ ହାଓ୍ୱାୟା ଚଲେ ଗଗନ୍ ବେୟେ,
ପାଷାନ୍ ଟୁଟେ ବ୍ୟାକୁଲ୍ ବେଗେ ଧେୟେ
ବହିୟା ଯାୟ ସୁରେର୍ ସୁରଧ୍ୱନୀ ।

ମନେ କରି ଅମ୍‌ନି ସୁରେ ଗାଇ,
କଣ୍ଠେ ଆମାର୍ ସୁର୍ ଖୁଛେ ନା ପାଇ ।

କଇତେ କି ଚାଇ କଇତେ କଥା ବାଧେ-
ହାର୍ ମେନେ ଯେ ପରାନ୍ ଆମାର୍ କାଁଦେ-
ଆମାୟ ତୁମି ଫେଲେଛୋ କୋନ୍ ଫାନ୍ଦେ
ଚୌଦିକେ ମୋର୍ ସୁରେର୍ ଜାଲ୍ ବୁନି ।

● ରବୀନ୍ଦ୍ର ନାଥ ଠାକୁର



# ୪୧ - ଆକାଶ୍ ଭରା ସୂର୍ଯ୍ୟ ତାରା

ଆକାଶ୍ ଭରା ସୂର୍ଯ୍ୟତାରା ବିଶ୍ୱଭରା ପ୍ରାନ୍
ତାହାରି ମାର୍ଝଘାନେ ଆମି ପେୟେଛି
ଆଣି ପେୟେଛି ମୋର ସ୍ଥାନ୍ ବିଶ୍ୱୟେଁ ତାଇ ଜାଗେ
*ଜାଗେ ଆମାର ଗାଁନ୍ - ଆକାଶ ଭରା (୧)*

ଅସୀମ କାଲେର୍ ଯେହିକେଲାଲେ ଯୋଆର ଭାଟାୟେ ଭୂବନ ଦୋଲେ
*ନାଡ଼ିତେ ମୋର୍ ରକ୍ତଧାରାଏ ଲେଗେଛ ତାର୍ ଟାନ୍...*
*ବିଶ୍ୱୟେଁ ତାଇ ଜାଗେ..... (୨)*

ଘାଷେ ଘାଷେ ପା ଫୈଲେଛି ବନେର୍ପଥେ ଯେତେ
ଫୁଲେର୍ ଗନ୍ଧେ ଚମକ୍ ଲେଗେ ଉଠେଛେ ମନ୍ ମେତେ
ଛୋଡ଼ିଏ ଆଛେ ଆନନ୍ଦେର୍ ଇ ଦାନ୍
*ବିଶ୍ୱୟେଁ ତାଇ ଜାଗେ ଆମରା ଗାନ୍.... (୩)*

କାନ୍ ପେଡ଼େଛି ଚୋଖ୍ ମେଲେଛି ଧରାର୍ ବୁକେ ପ୍ରାନ୍ ଢେଲେଛି
ଜାନାର୍ ମାଝେ ଅଜାନାର୍ କୋରେଛି ସନ୍ଧାନ୍...
*ବିଶ୍ୱୟେଁ ତାଇ ଜାଗେ...... (୪)*
ଜାଗେ ଆମାର ଗାଁନ୍... ଆକାଶଭରା ସୂର୍ଯ୍ୟତାରା

*• ରବୀନ୍ଦ୍ର ନାଥ ଠାକୁର*






# ୪୨- ଗ୍ୟାନେର୍ ମଶାଲ୍ ଜାଲୋ....

ଗ୍ୟାନେର୍ ମଶାଲ୍ ଜାଲୋ ଆଗେ ଚଲୋ ଆଗେ ଚଲୋରେ ଭାଇ
ବିଗ୍ୟାନେର୍ ଆଓ୍ୱାଜ୍ ତୋଲୋ... ଚଲୋରେ ଭାଇ
ଗ୍ୟାନେର୍ ମଶାଲ୍ ଜାଲୋ ବିଗ୍ୟାନେର୍ ଆଓ୍ୱାଜ୍ ତୋଲୋ (୧)

ହାଜାର୍ ହାଜାର୍ ବଛର ଆଗେ ଦୁହାତ୍ କରେ ହାତିଆର୍... ଆ... ଆ...
ପାଏ ପାଏ ଭେଙ୍ଗେଛି କତୋ ବାଧାର୍ ଚଡାଇ ଉତାର
ଯୁଗେ ଯୁଗେ ଝଡ଼ ଝଞ୍ଜା ଭୟେ ହିଂସା ପେରିଏ
ଚଲେଛି ଶବ୍ ଚଲେଛି ମାଟି ଜଲ୍ ଆକାଶ ଛାଡ଼ିଏ
ମହାକାଶ୍ ଛାଡ଼ିଏ ଗ୍ୟାନେର୍ ନିଶାନ୍ ଆରୋ ତଲୋ..... (୨)

ବନ୍ ପାହାଡ୍ କେଟେ ବସତ୍ ନଗର୍ ଆଲୋଏ ଭୋରେଛେ
ବର୍ଣ୍ଣପରିଚୟ ଦିଏ ମନେର୍ ଆଁଧାର ମୁଛେଛି
ପରମାନୁର୍ ଆଲୁଏ ଭୂତ୍ ଡାନ୍ ଦୈତ୍ୱ ଖୋଜେଛି
ରକେଟ୍ ଜାହାଜ୍ ଚଡେଁ ଦେବଲୋକେ ହାନା ଦିଏଛି
ଆମରାଇ ପେଡ଼େଛି ଶିଡ଼ି ମାଟି ଥେକେ ଆକାଶେ
ଯୁଦ୍ଧ ଘୋଷନା କରେଛି ରୋଗ ଜୀବାନୁର ଆବାସେ
ଉଚନିଚୁ ଭେଦ୍‌ଏବାର୍ ଭାଙ୍ଗ୍‌ବୋ ଯୋର୍ ମୁଚୋଡ୍ ଦିଏ
ଶବ୍ ଖାନେତେ ପଂଛେ ଯାବୋ ବଇକେ ଅସ୍ତ୍ର ବାନିଏ
ସୁଖ୍‌ଶାନ୍ତି ସମତା ଜଗତ୍ ଗଡ଼ାର୍ ଆଓ୍ୱାଜ୍ ତୋଲୋ...
ଗ୍ୟାନେର ମଶାଲ୍ ଜାଲୋ ବିଗ୍ୟାନେର୍ ଆଓ୍ୱାଜ୍ ତୋଲୋ...

• ନିଲୁ ମହାପାତ୍ର

# ୪୩- ଇନ୍ସାଫ୍ କି ଡଗର୍ ପେ

ଇନ୍ସାଫ୍ କି ଡଗର୍ ପେ ବଚ୍ଚୋଁ ଦିଖାଓ ଚଲ୍‌କେ
ୟେ ଦେଶ୍ ହୈ ତୁହ୍ମାଁରା ନେତା ତୁହ୍ମି ହୋ କଲ୍‌କେ
*ଇନ୍ସାଫ୍ କି ଡଗର୍ ପେ.... (୦)*

ଦୁନିଆଁ କେ ରଙ୍ଗ ସହ୍‌ନା ଔର୍ କୁଛ୍ ନା ମୁହଁ ସେ କହ୍‌ନା
ସଚ୍ଚାଇଓଁ କେ ବଲ୍ ପେ ଆଗେ ତୋ ବଢ଼ତେ ରହ୍‌ନା
ରଖ୍ ଦୋଗେ ଏକ୍ ଦିନ୍ ତୁମ୍ ସଂସାର୍ କୋ ବଦଲ୍ କେ ।
*ଇନ୍ସାଫ୍ କି ଡଗର୍ ପେ..... (୧)*

ଅପନେ ହୋୟା ପରାୟେ ସବ୍ କେ ଲିୟେ ହୋ ନ୍ୟାୟ,
ଦେଖୋଁ କଦମ୍ ତୁହ୍ମାରା ହରଗୀଜ୍ ନା ଡଗ୍‌ମଗାଏ,
ରାସ୍ତେ ବଡ଼େ କଠିନ୍ ହୈ ଚଲ୍ ସଂଭଲ୍ ସଂଭଲ୍ କେ ।
*ଇନ୍ସାଫ୍ କି ଡଗର୍ ପେ..... (୨)*

ଇନ୍ସାନିୟତ୍ କେ ସର୍ ପେ ଇଜ୍‌ଜତ୍ କୀ ତାଜ୍ ରଖ୍‌ନା
ତନ୍ ମନ୍ କି ଭେଟ୍ ଦେକର୍ ଭାରତ୍ କୀ ନାଜ୍ ରଖ୍‌ନା
ଜୀବନ୍ ନୟା ମିଲେଗା ଅନ୍ତିମ୍ ଚିତା ମେଁ ଜଲ୍‌କେ
*ଇନ୍ସାଫ୍ କି ଡଗର୍ ପେ..... (୩)*

*(୧୯୬୧ର "ଗଙ୍ଗା ଯମନା" ସିନେମାରୁ)*

# ୪୪- ଆଓ ବଚ୍ଚୋଁ ତୁହ୍ମେ ଦିଖାଏଁ

ଆଓ ବଚ୍ଚୋଁ ତୁହ୍ମେ ଦିଖାଏଁ ଝାଁକି ହିନ୍ଦୁସ୍ଥାନ କି
ଇସ୍ ମିଟି ସେ ତିଲକ୍ କରୋ ୟେ ଧରତୀ ବଲୀଦାନ୍ କି
ବନ୍ଦେ ମାତରମ୍..... (୦)

ୟେ ହୈ ଅପ୍‌ନା ରାଜ୍ ପୁତାନା ନାଜ୍ ଇସେ ତଲ୍‌ୱାରୋଁ ପେ,
ଇସ୍‌ନେ ସାରା ଜୀବନ୍ କାଟା ବରଛି ତୀର୍ କତାରୋଁ ପେ ।
ୟେ ପ୍ରତାପ୍ କା ୱତନ୍ ପଲା ହୈ ଆଜାଦୀ କେ ନାରୋଁ ପେ,
କୁଦ୍ ପଡ଼ି ଥି ୟହାଁ ହଜାରୋଁ ପଦ୍ମିନୀୟାଁ ଅଂଗାରୋଁ ପେ ।
ବୋଲ୍ ରହା ହୈ କଣ୍‌କଣ୍ ସେ କୁର୍‌ବାନୀ ରାଜସ୍ଥାନ କି ।
ବନ୍ଦେ ମାତରମ୍..... (୧)

ଦେଖୋ ମୁଲ୍‌କ୍ ମରାଠୋଁ କା ୟେ ୟହାଁ ଶିବାଜୀ ଡୋଲା ଥା,
ମୁଗ୍‌ଲୋଁ କି ତାକତ୍ କୋ ଜିସ୍‌ନେ ତଲ୍‌ୱାରୋଁ ପେ ତୋଲା ଥା ।
ହର୍ ପର୍‌ବତ୍ ପେ ଆଗ୍ ଜଲି ଥି ହର୍ ପଥର୍ ଏକ୍ ଶୋଲା ଥା ।
ବୋଲି ହର୍ ହର୍ ମହାଦେବ୍ କି ବଚ୍ଚା ବଚ୍ଚା ବୋଲା ଥା ।
ଶେର୍ ଶିବାଜୀ ନେ ରଖି ଥି ଲାଜ୍ ହମାରି ଶାନ୍ କି ।
ବନ୍ଦେ ମାତରମ୍..... (୨)

ଜାଲିଆନାୱାଲା ବାଗ୍ ୟେ ଦେଖୋ ୟହିଁ ଚଲିଁ ଥିଁ ଗୋଲିୟାଁ,
ୟେ ମତ୍ ପୁଛୋ କିସ୍‌ନେ ଖେଲି ୟହାଁ ଖୁନ୍ କି ହୋଲିୟାଁ ।
ଏକ୍ ତରଫ୍ ବନ୍ଦୁକେଁ ଦନ୍ ଦନ୍ ଏକ୍ ତରଫ୍ ଥିଁ ଟୋଲିୟାଁ,
ମର୍‌ନେ ୱାଲେ ବୋଲ୍ ରହେ ଥେ ଇନ୍‌କିଲାବ୍ କି ବୋଲିୟାଁ ।
ୟହାଁ ଲଂଗାଦି ବେହନୋଁ ନେ ଭି ବାଜି ଅପ୍‌ନି ଜାନ୍ କି ।
ବନ୍ଦେ ମାତରମ୍..... (୩)

• କବି ପ୍ରଦୀପ (ଜାଗୃତି ସିନେମାରୁ)

# ୪୫- ଦିଲ୍ ହୈ ଛୋଟା ସା....

ଦିଲ୍ ହେ ଛୋଟା ସା ଛୋଟିସି ଆଶା
ମସ୍ତି ଭରେ ମନ୍ କି ଭୋଲିସି ଆଶା
ଚାନ୍ଦ୍ ତାରୋଁ କୋ ଛୁନେଁ କି ଆଶା
ଆସ୍‌ମାନୋ ମେଁ ଉଡ୍‌ନେ କି ଆଶା
*ଦିଲ୍ ହେ ଛୋଟା ସା ଛୋଟିସି ଆଶା.... (୦)*

ମସ୍ତି ଭରେ ମନ୍ କି ଭୋଲିସି ଆଶା
ଚାନ୍ଦ୍ ତାରୋଁ କୋ ଛୁନେଁ କି ଆଶା
ଆସ୍‌ମାନୋ ମେଁ ଉଡ୍‌ନେ କି ଆଶା
*ଦିଲ୍ ହେ ଛୋଟା ସା ... ଭୋଲିସି ଆଶା (୧)*

ମେହେକ୍ ଯାଉଁ ମେଁ ଆଜ୍ ତୋ ଐସେ
ଫୁଲ୍ ବଗିୟା ମେଁ ମେହେକେ ହେ ଯୈସେ
ବାଦ୍‌ଲୋଁ କି ମେଁ ଓଢୁ ଚୁନରିୟା
ଝୁମ୍ ଯାଉଁ ମେଁ ବନ୍‌କେ ବାବରିଆ
ଅପ୍‌ନି ଚୋଟି ମେଁ ବାନ୍ଧ୍‌ଲୁଁ ଦୁନିଆ
*ଦିଲ୍ ହେ...... (୨)*

*ଏ...... ଏ.......*
ସ୍ୱର୍ଗ ସି ଧରତୀ ଖିଲ୍ ରହି ଯୈସେ
ମେରା ମନ୍ ଭି ତୋ ଖିଲ୍ ରହା ଐସେ
କୋୟଲ୍ କି ତରହା ଗାନେ କା ଅରମା
ବିଜ୍‌ଲି କି ତରହା ମଚ୍‌ଲୁଁ ଯେ ଅରମା
ଜୱାନୀ ହେ ଲାୟୀ ରଙ୍ଗୀନ୍ ସପନା
*ଦିଲ୍ ହେ....... (୩)*

*('ରୋଜା' ସିନେମାର ଏକ ଲୋକପ୍ରିୟ ଗୀତ)*

# ୪୬- ପଢ଼ନା ଲିଖ୍‌ନା ଶିଖୋ

ପଢ଼ନା ଲିଖ୍‌ନା ଶିଖୋ ଓ ମେହନତ୍ କରନେ ୱାଲୋଁ
ପଢ଼ନା ଲିଖ୍‌ନା ଶିଖୋ ଓ ଭୂଖ୍ ସେ ମରନେ ୱାଲୋଁ
କ ଖ ଗ ଘ କୋ ପହଚାନୋ, ଅଲିଫ୍ କୋ ପଢ଼ନା ଶିଖୋ
*ପଢ଼ନା ଲିଖ୍‌ନା....*

ପଢ଼ୋ କି ହର୍ ମେହନତ୍‌କଶ୍ କୋ ଉସ୍‌କା ହକ୍ ଦିଲ୍‌ୱାନା ହୈ
ଓ ସଡ଼କ୍ ବନାନେ ୱାଲୋ, ଓ ବୋଝା ଢୋନେ ୱାଲୋଁ
ପଢ଼ୋ ଅଗର୍ ଇସ୍ ଦେଶ୍ କୋ ଅପ୍‌ନେ ଢଙ୍ଗ୍ ସେ ଚଲ୍‌ୱାନା ହୈ
ଓ ବୋଝା ଢୋନେ ୱାଲୋ, ଓ ହଲ୍ ଚଲାନେ ୱାଲୋ
କ ଖ ଗ ଘ....
*ପଢ଼ନା ଲିଖ୍‌ନା....*

ପୁଛୋ ମଜଦୁରୀ କୀ ଖାତିର୍ ଲୋଗ୍ ଭଟକ୍‌ତେ କ୍ୟୋଁ ହୈଁ ?
ପଢ଼ୋ ତୁହ୍ମାରୀ ସୁଖୀ ରୋଟୀ ଗିଦ୍ଧ୍ ଲପକ୍‌ତେ କ୍ୟୋଁ ହୈଁ ?
ପୁଛୋ ମାଁ ବେହନୋଁ ପର୍ ୟୋଁ ବଦ୍‌ମାଶ୍ ଝପଟ୍‌ତେ କ୍ୟୋଁ ହୈଁ ?
ପଢ଼ୋ ତୁହ୍ମାରୀ ମେହନତ୍ କା ଫଲ୍ ସେଠ୍ ଗଟକ୍‌ତେ କ୍ୟୋଁ ହୈଁ ?
ପଢ଼ୋ ଲିଖା ହୈ ଦିୱାରୋଁ ପର୍ ମେହନତ୍‌କଶ୍ କା ନାରା
ପଢ଼ୋ କାୟଦେ ରାହତ୍ ବନ୍ ଜାଏଗା ବୋଝ୍ ତୁହ୍ମାରା
ପଢ଼ୋ ଅଗର୍ ଅଂଧେ ବିଶ୍ୱାସୋଁ ସେ ପାନା ଛୁଟ୍‌କାରା
ପଢ଼ୋ କିତାବେ, କୈସା ହୈ ସାରା ସଂସାର ତୁହ୍ମାରା
କ ଖ ଗ ଘ....
*ପଢ଼ନା ଲିଖ୍‌ନା*

● *ସଫଦର୍ ହାଶମୀ*

# ୪୭-ୟେ ମେରେ ୱତନ୍.....

ୟେ ମେରେ ୱତନ୍ କେ ଲୋଗୋ ତୁମ୍ ଖୁବ୍ ଲଗା ଲୋ ନାରା,
ୟେ ଶୁଭ୍ ଦିନ୍ ହୈ ହମ୍ ସବ୍କା ଲେହ୍ରାଲୋ ତିରଂଗା ପ୍ୟାରା ।

ପର୍ ମତ୍ ଭୁଲୋ ସୀମା ପର୍ ବୀରୋଁ ନେ ହେଁ ପ୍ରାଣ୍ ଗୱାଁଏ
କୁଛ୍ ୟାଦ୍ ଉନ୍ହେ ଭି କର୍ଲୋ ଯୋ ଲୌଟ୍ କେ ଘର୍ ନା ଆୟେ
ୟେ ମେରେ ୱତନ୍ କେ ଲୋଗୋ ଜରା ଆଁଖ୍ ମେଁ ଭର୍ଲୋ ପାନି,
*ଯୋ ଶହୀଦ୍ ହୁଏ ହୈ ଉନ୍କି ଜରା ୟାଦ୍ କରୋ କୁର୍ବାନୀ ।*
*ତୁମ୍ ଭୁଲ୍ ନା ଯାଓ ଉନ୍କୋ ଇସିଲିୟେ ସୁନୋ ୟେ କାହାନୀ ।*

ଯବ୍ ଘାୟଲ୍ ହୁଆ ହିମାଲୟ ଖତ୍ରେ ମେଁ ପଡ଼ି ଆଜାଦୀ,
ଜବ୍ ତକ୍ ଥୀ ସାଁସ୍ ଲଢ଼େ ୱ ଫିର୍ ଅପ୍ନି ଲାସ୍ ବିଚାଡ଼ି
ସଂଗୀନ୍ ପେ ଧର୍ କର୍ ମାଥା ଶୋ ଗୟେ ଅମର୍ ବଲିଦାନୀ
ଯବ୍ ଦେଶ୍ ମେଁ ଥି ଦିୱାଲୀ ୱ ଖେଲ୍ ରହେ ଥେ ହୋଲି,
ଯବ୍ ହମ୍ ବୈଠେ ଥେ ଘରୋଁ ମେଁ ୱ ଝେଲ୍ ରହେ ଥେ ଗୋଲି ।
*ଥେ ଧନ୍ୟ ଜୱାନ୍ ୱ ଅପ୍ନେ ଥି ଧନ୍ୟ ୱ ଉନ୍କି ଜୱାନୀ ।*

କୋଇ ଶିଖ୍ କୋଇ ଜାଟ୍ ମରାଠା କୋଇ ଗୁର୍ଖା କୋଇ ମଦ୍ରାଦି,
ସର୍ହଦ୍ ପର୍ ମର୍ନେୱାଲା ହର୍ ବୀର୍ ଥା ଭାରତ୍ୱାସୀ ।
*ଯୋ ଖୁନ୍ ଗିରା ପର୍ବତ୍ ପର୍ ୱ ଖୁନ୍ ଥା ହିନ୍ଦୁସ୍ତାନୀ ।*

ଥି ଖୁନ୍ ସେ ଲଥ୍ପଥ୍ କାୟା, ଫିର୍ ଭି ବନ୍ଧୁକ୍ ଉଠାୟା ।
ଦଶ୍ ଦଶ୍ କୋ ଏକ୍ ନେ ମାରା ଫିର୍ ଗିର୍ ଗୟେ ହୋସ୍ ଗୱାଁକେ
ଯବ୍ ଅନ୍ତ୍ ସମୟ ଆୟା ତୋ କେହ୍ ଗୟେ କେ ଅବ୍ ମର୍ତେ ହେଁ ।
ଖୁସ୍ ରହ୍ନା ଦେଶ୍ କେ ପ୍ୟାରୋଁ ଅବ୍ ହମ୍ ତୋ ସଫର୍ କର୍ତେ ହେଁ ।

କ୍ୟା ଲୋଗ୍ ଥେ ଓ୍ୱ ଦୀଓ୍ୱାନୀ
କ୍ୟା ଲୋଗ୍ ଥେ ଓ୍ୱ ଅଭିମାନୀ,
ଯୋ ଶହୀଦ୍ ହୁଏ ହେଁ ଉନ୍‌କି, ଜରା ଯାଦ୍ କରୋ କୁର୍‌ବାନୀ
ତୁମ୍ ଭୂଲ ନା ଯାଓ ଉନ୍‌କୋ, ଇସ୍‌ଲିୟେ କହୋ ୟେ କହାନୀ ।
*ଯୋ ଶହୀଦ୍ ହୁଏ ହେଁ ଉନ୍‌କି, ଜରା ଯାଦ୍ କରୋ କୁର୍‌ବାନୀ ।*
*ଜୟ ହିନ୍ଦ୍ ଜୟ ହିନ୍ଦ୍ କି ସେନା ଜୟ ହିନ୍ଦ୍*

*• କବି ପ୍ରଦୀପ*

# ୪୮- ସାରେ ଜହାଁ ସେ ଆଚ୍ଛା

ସାରେ ଜହାଁ ସେ ଆଚ୍ଛା ହିନ୍ଦୁସ୍ତାଁ ହମାରା - ହମାରା
ହମ୍ ବୁଲ୍‌ବୁଲେଁ ଇସ୍‌କୀ ୟେ ଗୁଲିସ୍ତାଁ ହମାରା - ହମାରା । (୦)

ପରବତ୍ ୱୋ ସବ୍‌ସେ ଉଁଚା ହମ୍‌ସାୟା ଆସ୍‌ମାଁ କା
ୱୋ ସନ୍ତରୀ ହମାରା ୱୋ ପାସବାଁ ହମାରା - ହମାରା । (୧)

ଗୋଦୀ ମେଁ ଖେଲ୍‌ତୀ ହେଁ ଇସ୍‌କୀ ହଜାରୋଁ ନଦୀୟାଁ
ଗୁଲ୍‌ସନ୍ ହୈ ଜିନ୍‌କେ ଦମ୍‌ସେ ରସ୍‌କେ ଜିନା ହମାରା - ହମାରା (୨)

ମଜ୍‌ହବ୍ ନେହୀଁ ଶିଖାତା ଆପସ୍ ମେଁ ବୈର୍ ରଖ୍‌ନା
ହିନ୍ଦୀ ହୈ ହମ୍, ହିନ୍ଦୀ ହୈ ହମ୍, ୱତନ୍ ହୈ ହିନ୍ଦୁସ୍ତାଁ ହମାରା-ହମାରା । (୩)

*• ମହମ୍ମଦ ଇକ୍‌ବାଲ୍*

# ୪୯- ସଭୀ ଜନ୍ ଏକ୍ ହୈଁ

ହିନ୍ଦ୍ ଦେଶ୍ କେ ନିବାସୀ ସଭୀ ଜନ୍ ଏକ୍ ହୈଁ ।
ରଙ୍ଗ୍-ରୂପ୍, ବେଶ୍-ଭାଷା ଚାହେ ଅନେକ ହୈଁ । (୦)

ବେଲା, ଗୁଲାବ୍, ଜୁହୀ, ଚମ୍ପା, ଚମେଲୀ ।
ପ୍ୟାରେ ପ୍ୟାରେ ଫୁଲ୍ ଗୁନ୍ଥେ ମାଲା ମେଁ ଏକ ହୈଁ । (୧)

କୋୟଲ୍ କୀ କୁକ୍ ନ୍ୟାରୀ ପପୀହେ କୀ ଟେର୍ ପ୍ୟାରୀ,
ଗା ରହୀ ତରାନା ବୁଲ୍‌ବୁଲ୍, ରାଗ୍ ମଗର୍ ଏକ୍ ହୈ । (୨)

ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର, କୃଷ୍ଣା, କାବେରୀ ।
ଜାକେ ମିଲ୍ ଗଈ ସାଗର୍ ମେଁ, ହୁଈ ସବ୍ ଏକ୍ ହୈଁ । (୩)

# ୫୦- ଝଣ୍ଡା ଉଁଚା ରହେ ହମାରା

ବିଜୟୀ ବିଶ୍ୱ ତ୍ରିରଙ୍ଗା ପ୍ୟାରା
ଝଣ୍ଡା ଉଁଚା ରହେ ହମାରା । (୦)

ସଦା ଶକ୍ତି ବରସାନେ ବାଲା,
ପ୍ରେମ୍ - ସୁଧା ସରସାନେ ବାଲା;
ବୀରୋଁ କୋ ହରଷାନେ ବାଲା,
ମାତୃଭୂମି କା ତନ୍ - ମନ୍ ସାରା (୧)

ସ୍ୱତନ୍ତ୍ରତା କେ ଭୀଷଣ ରଣ ମେଁ
ଲଖ୍‌କର ବଢ଼େ ଯୋଶ୍ କ୍ଷଣ କ୍ଷଣ ମେଁ
କମ୍ପେ ଶତ୍ରୁ ଦେଖ୍‌କର ମନ୍ ମେଁ
ମିଟ୍ ଜାଏ ଭୟ ସଙ୍କଟ ସାରା .... (୨)

# ୫୧ - ଗୀତ ଗା ରହେ ହେଁ

ଆ ଗୟେ ୟହାଁ ଜଓ୍ୱାଁ କଦମ୍ ମଂଜିଲୋଁ କୋ ଢୁଁଡତେ ହୁଏ,
*ଗୀତ ଗା ରହେ ହେଁ ଆଜ୍ ହମ୍ ରାଗିଣୀ କୋ ଢୁଁଢ଼ତେ ହୁଏ । (୦)*

ଦୋ ଦିଲୋଁ ମେଁ ୟେ ଉମଂଗ୍ ହୈ ୟେ ଜହାଁ ନୟା ବସାଏଂଗେ,
ଜିନ୍ଦେଗୀ କା ତୌର୍ ଆଜ୍ ସେ ଦୋସ୍ତୋଁ କୋ ହମ୍ ଶିଖାଏଂଗେ
ଫୁଲ୍ ଦୋ ନୟା ଖିଲାଏଂଗେ ତାଜ୍‌ଗୀ କୋ ଢୁଁଢତେ ହୁଏ
*ଗୀତ୍ ଗା ରହେ ହେଁ ଆଜ୍.... (୧)*

କୋଢ୍ କି ତରହ୍ ଦହେଜ୍ ହୈ ଆଜ୍ ଦେଶ୍ କେ ସମାଜ୍ .ମେଁ,
ହୈ ତବାହ ଆଜ୍ ଆଦ୍‌ମୀ ଲୁଟ୍ ପର୍ ଟିକେ ସମାଜ୍ ମେଁ ।
ହମ୍ ସମାଜ ଭି ବନାଏଁ ଆଦ୍‌ମୀ କୋ ଢୁଁଢତେ ହୁଏ
*ଗୀତ୍ ଗା ରହେ ହେଁ ଆଜ୍..... (୨)*

ଫିର୍ ନା ରୋ ସକେ କୋଇ ଦୁଲ୍‌ହନ୍ ଜୋର୍ - ଜୁଲ୍‌ମ କା ନା ହୋ ନିଶାଁ,
ମୁସ୍‌କରା ଉଠେ ଧରା-ଗଗନ୍ ହମ୍ ରଚେଂଗେ ଏସି ଦାସ୍ତାଁ ।
ୟୁଁ ସଜାଏଂଗେ ଓ୍ୱତନ୍ କୋ ହମ୍ ହର୍ ଖୁସି କୋ ଢୁଁଢତେ ହୁଏ ।
*ଗୀତ୍ ଗା ରହେ ହେଁ ଆଜ୍.... (୩)*



# ୪୨-ତୁ ଜିନ୍ଦା ହୈ

ତୁ ଜିନ୍ଦା ହୈ ତୋ ଜିନ୍ଦେଗୀ କି ଜିତ୍ ମେଁ ୟକିନ୍ କର୍,
*ଅଗର୍ କହିଁ ହୈ ସ୍ୱର୍ଗ ତୋ ଉତାର୍ ଲା ଜମୀନ୍ ପର୍ । (୦)*

ୟେ ଗମ୍ କି ଔର୍ ଚାର୍ ଦିନ୍, ସିତମ୍ କେ ଔର ଚାର୍ ଦିନ୍,
ୟେ ଦିନ୍ ଭି ଜାଏଂଗେ ଗୁଜର୍, ଗୁଜର୍ ଗଏ ହଜାର୍ ଦିନ୍ ।
କଭି ତୋ ହୋଗୀ ଇସ୍ ଚମନ୍ ପେ ଭି ବହାର୍ କି ନଜର୍,
ଅଗର୍ କହିଁ ହୈ ସ୍ୱର୍ଗ ତୋ ଉତାର୍ ଲା ଜମୀନ୍ ପର୍ ।
*ତୁ ଜିନ୍ଦା ହୈ..... (୧)*

ସୁବହ ଶାମ୍ କେ ରଂଗେ ହୁଏ ଗଗନ୍ କୋ ଚୁମ୍‌କର୍,
ତୁ ଶୁନ୍ ଜମିନ୍ ଗା ରହି ହୈ କବ୍ ସେ ଝୁମ୍ - ଝୁମ୍ କର୍ ।
ତୁ ଆ ମେରା ସିଂଗାର୍ କର୍ ତୁ ଆ ମୁଝେ ହସୀନ୍ କର୍,
ଅଗର୍ କହିଁ ହୈ ସ୍ୱର୍ଗ ତୋ ଉତାର୍ ଲା ଜମୀନ୍ ପର୍ ।
*ତୁ ଜିନ୍ଦା ହୈ .... (୨)*

ହଜାର୍ ଭେଶ୍ ଧରକେ ଆଇ ମୌତ୍ ତେରେ ଦ୍ୱାର୍ ପର୍,
ମଗର୍ ତୁଝେ ନା ଛଲ୍ ସକି, ଚଲି ଗଇ ଓ୍ୱ ହାର୍ କର୍ ।
ନଇ ସୁବହ କେ ସଂଗ୍ ସଦା ତୁଝେ ମିଲି ନଇ ଉମର୍,
ଅଗର୍ କହିଁ ହୈ ସ୍ୱର୍ଗ ତୋ ଉତାର୍ ଲା ଜମୀନ୍ ପର୍ ।
*ତୁ ଜିନ୍ଦା ହୈ..... (୩)*

*● ଶଙ୍କର ଶୈଳେନ୍ଦ୍ର*

# ୫୩- ତୁ ହିନ୍ଦୁ ବନେଗା

ତୁ ହିନ୍ଦୁ ବନେଗା ନା ମୁସଲମାନ୍ ବନେଗା,
ଇନ୍‌ସାନ୍ କି ଔଲାଦ୍ ହେ ଇନ୍‌ସାନ୍ ବନେଗା ।.... (୦)
ଅଚ୍ଛା ହେ ଅଭି ତକ୍ ତେରା କୁଛ ନାମ୍ ନେହିଁ ହେ ।
ତୁଝ୍‌କୋ କିସି ମଜ୍‌ହବ୍ ସେ କୋଇ କାମ୍ ନେହିଁ ହେ ।
ଜିସ୍ ଇଲମ୍ ନେ ଇନ୍‌ସାନୋଁ କୋ ତକ୍‌ଦିମ୍ କିଆ ହେ,
ଉସ୍ ଇଲମ୍ କା ତୁଝ୍‌ପର୍ କୋଇ ଇଲ୍‌ଜାମ୍ ନେହିଁ ହେ ।
ତୁ ବଦ୍‌ଲେ ହୁଏ ୱକ୍ତ କି ପେହ୍‌ଚାନ୍ ବନେଗା,
ଇନ୍‌ସାନ୍ କି ଔଲାଦ୍ ହେ..... (୧)
ମାଲିକ୍ ନେ ହର୍ ଇନ୍‌ସାନ୍ କୋ ଇନ୍‌ସାନ୍ ବନାୟା,
ହମ୍‌ନେ ଉସେ ହିନ୍ଦୁ ୟା ମୁସଲ୍‌ମାନ୍ ବନାୟା ।
କୁଦ୍‌ରତ୍ ନେ ତୋ ବକ୍‌ସି ଥି ହମେଁ ଏକ୍ ହି ଧରତୀ,
ହମ୍‌ନେ କହିଁ ଭାରତ କହିଁ ଇରାନ୍ ବନାୟା ।
ଯୋ ତୋଡ୍ ଦେ ହର୍ ବନ୍ଧ୍ ୱ ତୁଫାନ୍ ବନେଗା,
ଇନ୍‌ସାନ୍ କି ଔଲାଦ୍ ହେ..... (୨)
ନଫ୍‌ରତ୍ ଯୋ ଶିଖାୟେ ୱ ଧରମ୍ ତେରା ନେହିଁ ହେ,
ଇନ୍‌ସା କୋ ଯୋରଦେ ୱ କଦମ୍ ତେରା ନେହିଁ ହେ ।
କୁରୁଆନ୍ ନା ହୋ ଜିସ୍‌ମେଁ ୱ ମନ୍ଦିର୍ ନେହିଁ ତେରା,
ଗୀତା ନା ହୋ ଜିସ୍‌ମେଁ ୱ ହରମ୍ ତେରା ନେହିଁ ହେ ।
ତୁ ଅମ୍ନକା ଔର୍ ସୋଲ୍‌ହ୍ କା ଅରମାନ୍ ବନେଗା,
ଇନ୍‌ସାନ୍ କି ଔଲାଦ୍ ହେ.... (୩)
ୟେ ଦିନ୍ କେ ତାଜର୍ ୟେ ୱତନ୍ ବେଚ୍‌ନେୱାଲେ,
ଇନ୍‌ସାନୋଁ କି ଲାସୋଁ କେ କଫନ୍ ବେଚ୍‌ନେୱାଲେ ।
ୟେ ମହଲୋଁ ମେଁ ବୈଠେ ହୁଏ କାତିଲ୍ ୟେ ଲୁଟେରେ,
କାଁଟୋ କେ ହି ବଜ୍‌ରୁ ହେ ଚମନ୍ ବେଚ୍‌ଲେୱାଲେ ।
ତୁ ଇନ୍‌କେ ଲିୟେ ମୌତ୍ କା ଏଲାନ୍ ବନେଗା,
ଇନ୍‌ସାନ୍ କି ଔଲାଦ୍ ହେ....

*('ଧୂଲ୍ କା ଫୁଲ୍' ସିନେମାର ଏକ ଲୋକପ୍ରିୟ ଗୀତ)*

## ୫୪- ସର୍ ଫରୋଷୀ କୀ ତମନ୍ନା (ଉର୍ଦ୍ଦୁ ଗୀତ)

ସର୍ ଫରୋଷୀ କୀ ତମନ୍ନା ଅବ୍ ହମାରେ ଦିଲ୍ ମେଁ ହୈ
ସର୍ ଫରୋଷୀ କୀ ତମନ୍ନା ଅବ୍ ହମାରେ ଦିଲ୍ ମେଁ ହୈ ।
ଦେଖ୍‌ନା ହୈ ଜୋର୍ କିତ୍‌ନା ବାଜୁୟେ କାତିଲ୍ ମେଁ ହୈ ॥

ରାହବରେ ରାହେ ମୁହବତ୍ ରହ ନ ଜାନା ରହା ମେଁ ।
ଲଜତେ ସହରା ନବରଦୀ ଦୁରିୟେ ମଞ୍ଜିଲ୍ ମେଁ ହୈ ॥

ୱକତ୍ ଆନେ ଦେ ବତା ଦେଙ୍ଗେ ତୁଝେ ୟେ ଆସ୍‌ମାଁ ।
ହମ୍ ଅଭୀ ସେ କ୍ୟା ବତାୟେଁ କ୍ୟା ହମାରେ ଦିଲ୍ ମେଁ ହୈ ॥

ଆକେ ମକତଲ୍ ମେଁ ୟହ କାତିଲ୍ କହ ରହା ହୈ ବାର୍ ବାର୍ ।
କ୍ୟା ତମ୍‌ନାୟେ ଶହାଦନ୍ ଭୀ କିସୀ କେ ଦିଲ୍ ମେଁ ହୈ ॥

ୟେ ଶହୀଦେ ମୁଲ୍‌କୋ ମିଲ୍ଲତ ତେରେ କଦମୌଁ ପର୍ ନିସାର୍ ।
ତେରୀ କୁରବାନୀ କୀ ଚର୍ଚ୍ଚା ଗୈର କୀ ମହଫିଲ୍ ମେଁ ହୈ ॥

ଅବ୍ ନ ଅହଲେ ବଲବଲେ ହୈଁ ଔର ନ ଅରମାଗୋଁ କୀ ଭୀଡ୍ ।
ଏକ୍ ମିଟ୍ ଜାନେ କୀ ହସରତ୍ ଅବ୍ ଦିଲେ ବିସ୍‌ମିଲ୍ ହୈ ॥

*(ଶ୍ରୀ ରାମପ୍ରସାଦ ବିସ୍‌ମିଲ୍ଲା ଫାଶି ପାଇବାକୁ ଗଲାବେଳେ ଏ ଗୀତ ରଚନା କରିଥିଲେ । ୧୯୬୫ ମସିହାରେ ପ୍ରସ୍ତୁତ 'ଶହୀଦ୍' ସିନେମାରୁ)*

# ୫୫- ତୁମ୍ ହି ହୋ ମାତା

ତୁମ୍‌ହି ହୋ ମାତା, ପିତା ତୁମ୍‌ହି ହୋ,
ତୁମ୍‌ହି ହୋ ବନ୍ଧୁ ସଖା ତୁମ୍ ହି ହୋ ।

ତୁମ୍‌ହି ହୋ ସାଥି ତୁମ୍ ହି ସହାରେ
କୋଇ ନା ଅପନା ସିୱା ତୁମ୍‌ହାରେ,
ତୁମ୍ ହି ହୋ ନୈୟା, ତୁମ୍ ହି ଖିୱୈୟା,
ତୁମ୍ ହି ହୋ ବନ୍ଧୁ ସଖା ତୁମ୍ ହି ହୋ ।

ଯୋ ଖିଲ୍ ସକେନା ୱୋ ଫୁଲ୍ ହମ୍ ହେ
ତୁମ୍‌ହାରି ଚରଣୋଁ କେ ଧୂଲ୍ ହମ୍ ହୈ,
ଦୟା କି ଦୃଷ୍ଟି ସଦା ହି ରଖନା
ତୁମ୍ ହି ହୋ ବନ୍ଧୁ ସଖା ତୁମ୍ ହି ହୋ ।



# ୫୬- ବନ୍ଦେ ମାତରମ୍

ବନ୍ଦେ ମାତରମ୍
ସୁଜଲାଂ ସୁଫଲାଂ ମଲୟଜ-ଶୀତଲାଂ
*ଶସ୍ୟ-ଶ୍ୟାମଲାଂ ମାତରମ୍ ।*
ଶୁଭ୍ର-ଜ୍ୟୋତ୍ସ୍ନା-ପୁଲକିତ-ଯାମିନୀମ୍
ଫୁଲ୍ଲ-କୁସୁମିତ-ଦ୍ରୁମଦଳ-ଶୋଭିନୀମ୍
ସୁହାସିନୀଂ ସୁମଧୁର ଭାଷିନୀମ୍
*ସୁଖଦାଂ ବରଦାଂ ମାତରମ୍ ।*

କୋଟି କୋଟି କଣ୍ଠ - କଳକଳ - ନିନାଦ କରାଲେ
କୋଟି କୋଟି - ଭୁଜୈାଧୃତ୍ - ଖର କରବାଲେ
କେ ବଲେ ମା ତୁମି ଅବଲେ !
ବହୁବଳ-ଧାରିଣୀଂ ନମାମି ତାରିଣୀଂ
*ରିପୁଦଳ - ବାରିଣୀଂ ଭାରତମ୍ ।*

ତୁମି ବିଦ୍ୟା ତୁମି ଧମ, ତୁମି ହୃଦି ତୁମି ମର୍ମ
ତ୍ୱଂ ହି ପ୍ରାଣାଃ ଶରୀରେ
ବହୁତେ ତୁମି ମା ଶକ୍ତି, ହୃଦୟେ ତୁମି ମା ଭକ୍ତି
ତୋମାରଇ ପ୍ରତିମା ଗଢ଼ି ମନ୍ଦିରେ ମନ୍ଦିରେ ।
ତ୍ୱଂ ହି ଦୁର୍ଗା ଦଶପ୍ରହରଣ ଧାରିଣୀଂ
କମଲା କମଲ-ଦଲ - ବିହାରିଣୀଂ
ବାଣୀ ବିଦ୍ୟାଦାୟିନୀ ନମାମି ତ୍ୱାମ୍
ନମାମି କମଲାଂ ଅମଲାଂ ଅତୁଲାଂ
*ସୁଜଲାଂ ସୁଫଲାଂ ମାତରମ୍ ।*

ଶ୍ୟାମଲାଂ ସରଲାଂ ସୁସ୍ମିତାଂ ଭୂଷିତାଂ
*ଧରଣୀଂ ଭରଣୀଂ ମାତରମ୍ ।*
*ବନ୍ଦେ ମାତରମ୍.... ।*

*● ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ*

# ୫୭- ଜନନୀ ଭାରତ

ସର୍ବେଷାଂ ନୋ ଜନନୀ ଭାରତ-ଧରଣୀ କଲ୍ପଲତେୟମ୍
ଜନନୀବତ୍ସଳ ତନୟଗଣୈସ୍ତତ୍ ସମ୍ୟକ୍ଶର୍ମ ବିଧେୟମ୍ ।

ହିମଗିରି-ସୀମନ୍ତିତ-ମସ୍ତକମିଦମମ୍ବୁଧିପରିଗତପାର୍ଶ୍ୱମ୍
ଅସ୍ମଜ୍ଜନ୍ମଦମନ୍ନଦମନିଶଂ ଶ୍ରୌତପୁରାତନମାର୍ଷମ୍
ବିଜନିତ ହର୍ଷଂ ଭାରତବର୍ଷଂ ବିଶ୍ୱୋକ୍ରର୍ଷ ନିଦାନମ୍
ଭାରତଶର୍ମଣି କୃତମସ୍ମାଭିନବମିଦମୈକ୍ୟବିଧାନମ୍ ।

ଉତ୍କଳଗୌଡ଼ାନ୍ଧ୍ରୀ-ୟାଃ ସଂସଦି ଯେ ବୟମତ୍ର ସମେତାଃ ।
ଏତେ ଚାପରଜନପଦଜା-ନନୁ ଭାରତବିହିତନିକେତାଃ ।

ଭାରତହିତସମ୍ପାଦନମେବ ହି କାର୍ଯ୍ୟମିଷ୍ଟମବିପାକମ୍
ଭାରତବର୍ଜଂ କିମପି ନ କାର୍ଯ୍ୟଂ ନିଶ୍ଚିତମିତ୍ୟସ୍ମାକମ୍ ।

ଭାରତପଙ୍କଜଦଳମିଦମୁତ୍କଳ-ମଣ୍ଡଳମିତି ବିଦିତଂ ଯତ୍
ତସ୍ୟ କୃତେବୟମତ୍ର ସମେତା ବିହିତାତ୍ରୋତ୍କଳ-ସଂସତ୍ ।

ଭାରତମେକା ଗତିରସ୍ମାକଂ ନ ପରାସ୍ତି ଭୂମି ନାମଃ
ସର୍ବାଦୌ ପରିଷଦ୍କର୍ମଣି ତତ୍ଭାରତମେବ ନମାମା ।

● କବିବର ରାଧାନାଥ ରାୟ

# ଭାରତ ଜ୍ଞାନ ବିଜ୍ଞାନ ସମିତିର ବିଜ୍ଞାନ ଓ ଶିକ୍ଷା ସମ୍ବନ୍ଧୀୟ

| କ୍ର.ନଂ | ପୁସ୍ତକର ନାମ | ମୂଲ୍ୟ | କ୍ର.ନଂ | ପୁସ୍ତକର ନାମ | ମୂଲ୍ୟ |
|---|---|---|---|---|---|
| ୦୧. | ମାଙ୍କଡ଼ କେମିତି ମଣିଷ ହେଲେ ? | ୩.୦୦ | ୩୧. | ଶୋକ ସଭା | ୨.୦୦ |
| ୦୨. | ଖାଇବା ଜିନିଷରେ ଭେଜାଲ | ୩.୦୦ | ୩୨. | ପଶୁ | ୨.୫୦ |
| ୦୩. | ଆକାଶ କାହିଁକି ନୀଳ ଦିଶେ ? | ୩.୦୦ | ୩୩. | ମାଗୁଣୀର ଶଗଡ଼ | ୨.୦୦ |
| ୦୪. | ବାଲିଗରଡ଼ା ଓ ମାମୀ | ୩.୦୦ | ୩୪. | ଘର ଓ ସ୍ୱର୍ଗ | ୩.୦୦ |
| ୦୫. | ଦଳିତଙ୍କ ସାଥୀ ବିଜ୍ଞାନୀ କାର୍ଭର | ୩.୦୦ | ୩୫. | ବଡ଼ ଘରର ଝିଅ | ୨.୫୦ |
| ୦୬. | ମୃତ୍ତିକା | ୩.୦୦ | ୩୬. | ଜୀବନଠୁ ବଳି ବନ୍ଧୁ | ୩.୦୦ |
| ୦୭. | ଚାଷର କାହାଣୀ | ୨.୦୦ | ୩୭. | ଶବନାୟକ | ୨.୦୦ |
| ୦୮. | ଚୁଲ୍ଲୀର ଆକାଶ ଚୁଲା | ୨.୫୦ | ୩୮. | ଟଲଷ୍ଟୟଙ୍କ ମନଚୁଆଁ କାହାଣୀ | ୩.୦୦ |
| ୦୯. | ଯଦି ଯାଆନ୍ତି ଉଡ଼ି.... | ୩.୦୦ | ୩୯. | ଜଣେ ବିଚିତ୍ର ଲୋକଙ୍କ କଥା | ୩.୦୦ |
| ୧୦. | ବାର ରାଶିଙ୍କ କାହାଣୀ | ୩.୦୦ | ୪୦. | ମୁକ୍ତିର ଉଲ୍ଲାସ | ୩.୦୦ |
| ୧୧. | ଆମ ହାତର କାହାଣୀ | ୩.୦୦ | ୪୧. | ବୋହୂ | ୨.୦୦ |
| ୧୨. | ଶିକାରୀ କାଳପୁରୁଷ | ୨.୫୦ | ୪୨. | ମୋ ଗାଈ | ୩.୦୦ |
| ୧୩. | ଜୀବନର ଜୀବନ କାହାଣୀ | ୩.୦୦ | ୪୩. | ବିପ୍ଳବ ଭେରୀ | ୩.୦୦ |
| ୧୪. | ଆକାଶର ଉପହାର | ୫.୦୦ | ୪୪. | ଚାଲ ଗାଇବା | ୩.୦୦ |
| ୧୫. | ଦେହପାଇଁ ପଞ୍ଚାମୃତ | ୩.୦୦ | ୪୫. | ବହି କିଛି କହୁଛି | ୩.୦୦ |
| ୧୬. | ଧୂମକେତୁ ବିଚିତ୍ରା | ୫.୦୦ | ୪୬. | ପିଲାଙ୍କ ଲୋକଗୀତ | ୩.୦୦ |
| ୧୭. | ସାତ ପିଢ଼ିର କାହାଣୀ | ୩.୦୦ | ୪୭. | ପଣ୍ଡିତ ରମାବାଈଙ୍କ କାହାଣୀ | ୨.୫୦ |
| ୧୮. | ଇତିହାସ କଣ ? | ୩.୦୦ | ୪୮. | ପାଠକ ସନ୍ଧାନରେ | ୨.୦୦ |
| ୧୯. | ମାଟି ମାଉ ଡାକ | ୨.୫୦ | ୪୯. | ପ୍ରେରଣା | ୩.୦୦ |
| ୨୦. | ଡିମ୍ବର ସଂସାର | ୩.୦୦ | ୫୦. | ବାପା ଯେବେ ପିଲାଥିଲେ | ୩.୦୦ |
| ୨୧. | ମୁକ୍ତିର ବାଟ | ୩.୦୦ | ୫୧. | ଗୁରୁଜୀଙ୍କ ମକର | ୩.୦୦ |
| ୨୨. | ଲକ୍ଷ୍ମଣ ନାୟକ ଫାଶୀ | ୨.୦୦ | ୫୨. | ବିଦେଶରେ ପିଲାଙ୍କ ଶିକ୍ଷା | ୩.୦୦ |
| ୨୩. | କୁନିର କାହାଣୀ | ୨.୫୦ | ୫୩,୫୪. | ପଢିର ଚିଡ଼ିଆଖାନା (୧ ଓ ୨) | ୩.୦୦ |
| ୨୪. | ଆଶାର ସଂଧାନରେ.... | ୬.୦୦ | ୫୫. | ଗପ ଅଗପ | ୨.୫୦ |
| ୨୫. | ସ୍ତ୍ରୀଙ୍କ ଚିଠି | ୨.୫୦ | ୫୬. | ପଶୁପକ୍ଷୀ ଲୋକକଥା | ୨.୫୦ |
| ୨୬. | ରେବତୀ | ୨.୫୦ | ୫୭. | ଜୋନାଥନ ଲିଭିଂଷ୍ଟୋନ ସିଗଲ୍ | ୪୦.୦୦ |
| ୨୭. | ଶିକାର | ୨.୦୦ | ୫୮. | ଲୁବ୍‌ଧକ (ପତ୍ରିକା) | ୬.୦୦ |
| ୨୮. | ଅନ୍ଧାରୁଆ | ୩.୦୦ | ୫୯. | ଆମେ ଓ ଆମପିଲା | ୫.୦୦ |
| ୨୯. | ବୁଢ଼ା ଶଙ୍ଖାରୀ | ୨.୫୦ | ୬୦. | ଆମେ ଭାଗ୍ୟବାନ | ୫.୦୦ |
| ୩୦. | ମାଂସର ବିଳାପ | ୩.୦୦ | ୬୧. | ତାରା ରାଇଜ କଥା | ୫.୦୦ |

| କ୍ର.ନଂ | ପୁସ୍ତକର ନାମ | ମୂଲ୍ୟ |
|---|---|---|
| ୬୨. | ଆମ ଆକାଶ | ୫.୦୦ |
| ୬୩. | ଶୁଆ | ୫.୦୦ |
| ୬୪. | ଅଣ୍ଡାରୁ ଚିଆଁ | ୫.୦୦ |
| ୬୫. | ଶିଶୁ କିପରି ସୃଷ୍ଟି ହୁଅନ୍ତି | ୮.୦୦ |
| ୬୬. | ସଦାକୋ ଓ କାଗଜର ପକ୍ଷୀ | |
| ୬୭. | କୁନି ଆର୍ଥରର ସ୍ବପ୍ନ | |
| ୬୮. | କୁନି ରାଜକୁମାରୀ ଓ ଚନ୍ଦ୍ରମା | |
| ୬୯. | ବୁଲା ବାବା | |
| ୭୦. | ଖୁସିଭରା ବିଦ୍ୟାଳୟ | |
| ୭୧. | ଆମେ ଓ ପୋଲିସ | |
| ୭୨. | ମୋ ମାଆ | |
| ୭୩. | ଦାନା ଗଛ | |
| ୭୪. | ଆମ ଗୀତ ବହି | |
| ୭୫. | ମଂଜି | |
| ୭୬. | ଆମ ଏକତା | |
| ୭୭. | ଆମ ସମାଜ | |
| ୭୮. | ବୋବଳ ହେଲି | |
| ୭୯. | ଆମ ପୋଖରୀ | |
| ୮୦. | ଆମ ପିଲା ଆମ ସ୍କୁଲ | ୫.୦୦ |
| ୮୧. | ଜାତୀୟ ପତାକାର କାହାଣୀ | ୧୫.୦୦ |
| ୮୨. | ସଂଗ୍ରାମ ସଂଗୀତ | ୧୦.୦୦ |
| ୮୩. | ନବମ ଲୋକଯୋଜନା ଅଭିଯାନ | ୧୫.୦୦ |

**ସମିତିର ସାଧାରଣ ସ୍ୱାସ୍ଥ୍ୟ ସଚେତନ ପୁସ୍ତିକା :**

| କ୍ର.ନଂ | ପୁସ୍ତକର ନାମ | ମୂଲ୍ୟ |
|---|---|---|
| ୮୪. | ଖାଦ୍ୟର ଗୁମର କଥା | ୬.୦୦ |
| ୮୫. | ପରିମଳ ଓ ସ୍ୱାସ୍ଥ୍ୟ | ୫.୦୦ |
| ୮୬. | ତରଳ ଝାଡ଼ା | ୫.୦୦ |
| ୮୭. | ଅନ୍ଧାରରୁ ଆଲୋକ | ୫.୦୦ |
| ୮୮. | ପିଲା ଜନ୍ମ ଆମ ହାତରେ | ୫.୦୦ |
| ୮୯. | ଆମ ଶରୀର | ୫.୦୦ |
| ୯୦. | ପୁଷ୍ଟିକର ଖାଦ୍ୟ | ୫.୦୦ |
| ୯୧. | ପ୍ରତିଷେଧକ ଟିକା | ୫.୦୦ |
| ୯୨. | ଜଳ ବି ରୋଗର ବାହକ | ୫.୦୦ |
| ୯୩. | ପାଣି ଆମ ଜୀବନ | ୫.୦୦ |
| ୯୪. | ସର୍ଦ୍ଦି ଓ କାଶ | ୫.୦୦ |
| ୯୫. | ନାରୀର ସ୍ୱାସ୍ଥ୍ୟ | ୫.୦୦ |
| ୯୬. | ଆମେ ଅସୁସ୍ଥ ହେଉ କାହିଁକି ? | ୫.୦୦ |
| ୯୭. | ଏକ ରହସ୍ୟମୟ ସକାଳ | ୫.୦୦ |
| ୯୮. | ଅଳିଆରୁ ସଂପଦ | ୫.୦୦ |
| ୯୯. | ଚିଠି | ୫.୦୦ |
| ୧୦୦. | ଆମ ସ୍ୱାସ୍ଥ୍ୟ ଆମ ହାତରେ | ୫.୦୦ |
| ୧୦୧. | ଗାଁ ପରିମଳ | ୫.୦୦ |
| ୧୦୨. | ବନ୍ଧୁ | ୫.୦୦ |
| ୧୦୩. | ପିଲାଙ୍କ ପାଇଁ ସଜବାଜ | ୫.୦୦ |
| ୧୦୪. | ଚେରମୂଳି ଔଷଧ ପ୍ରସ୍ତୁତି | ୫.୦୦ |
| ୧୦୫. | ଔଷଧୀୟ ବୃକ୍ଷଲତା (ଘର ବଇଦ ୧ ରୁ ୧୦ମ ଖଣ୍ଡ) | ୫.୦୦ |
| ୧୦୬. | ଚର୍ମ ରୋଗ (ଭାଗ ୧-୨) | ୫.୦୦ |
| ୧୦୭. | ସାଇନୁସାଇଟିସ୍ | ୫.୦୦ |
| ୧୦୮. | ଶର୍ଦ୍ଦି | ୫.୦୦ |
| ୧୦୮. | ଜର | ୫.୦୦ |
| ୧୦୯. | ପେଟରୋଗ (ଭାଗ ୧-୨) | ୫.୦୦ |
| ୧୧୦. | ଆମେ ସୁସ୍ଥରେ ରହିବା କିପରି ? | ୫.୦୦ |
| ୧୧୧. | ଦାନ୍ତ ଓ ପାଟିର ଯତ୍ନ | ୫.୦୦ |
| ୧୧୨. | ସ୍ତ୍ରୀରୋଗ | ୫.୦୦ |
| ୧୧୩. | ଅର୍ଶରୋଗ | ୫.୦୦ |
| ୧୧୪. | ପ୍ରସୂତୀ ମା ଓ ଶିଶୁର ଯତ୍ନ | ୫.୦୦ |
| ୧୧୫. | କୃମି | ୫.୦୦ |
| ୧୧୬. | କେତୋଟି ସାଧାରଣ ରୋଗ (୧୦୨) | ୫.୦୦ |
| ୧୧୭. | ତରଳ ଝାଡ଼ା | ୫.୦୦ |